Anil Kumar Panigrahy



# ବୃଦ୍ଧି ବିକାଶ ପାଇଁ ଅଧିକ ସୁସ୍ୱାଦୁ ରୀତି
# ଫ୍ୟାରେକ୍ସ® ରୀତି

| ଆପଣଙ୍କ ଶିଶୁର ଉଚ୍ଚତା ଓ ଓଜନ ଯାଞ୍ଚ କରି ନିଅନ୍ତୁ* | ଶିଶୁ (ପୁଅ) | | ଶିଶୁ (ଝିଅ) | |
|---|---|---|---|---|
| | ଓଜନ | ଉଚ୍ଚତା | ଓଜନ | ଉଚ୍ଚତା |
| ୩ ମାସରେ | ୫.୨ କେଜି | ୫୯.୧ ସେ.ମି. | ୪.୯ କେଜି | ୫୮.୪ ସେ.ମି. |
| ୬ ମାସରେ | ୬.୭ କେଜି | ୬୪.୭ ସେ.ମି. | ୬.୧ କେଜି | ୬୩.୭ ସେ.ମି. |
| ୯ ମାସରେ | ୭.୩ କେଜି | ୬୮.୨ ସେ.ମି. | ୬.୯ କେଜି | ୬୭.୦ ସେ.ମି. |
| ୧୨ ମାସରେ | ୮.୪ କେଜି | ୭୩.୯ ସେ.ମି. | ୭.୮ କେଜି | ୭୨.୫ ସେ.ମି. |

* ଇଣ୍ଡିଆନ କାଉନସିଲ ଅଫ ମେଡିକାଲ ରିସର୍ଚ୍ଚଙ୍କ ଦ୍ୱାରା ପ୍ରକାଶିତ ।

ଭାରତୀୟ ଶିଶୁମାନଙ୍କ ପାଇଁ ଏହା ଏକ ହାରାହାରି ହିସାବ । ଶିଶୁ ଯେଉଁଳି ବଢୁଛି ସେଥିରେ ଯଦି ଆପଣଙ୍କ ଡାକ୍ତର ସନ୍ତୁଷ୍ଟ ହୁଅନ୍ତି ତାହେଲେ ଆପଣ ନିଶ୍ଚିନ୍ତ ରହିପାରନ୍ତି ।

ବିନାମୂଲ୍ୟରେ ଶିଶୁର ଯତ୍ନ ସଂପର୍କୀୟ ଆପଣଙ୍କର ରଙ୍ଗୀନ ନିର୍ଦ୍ଦେଶ-ପୁସ୍ତିକା ପାଇବା ପାଇଁ ଏହି ଠିକଣାରେ ଲେଖନ୍ତୁ —
Glindia Ltd. (FPD/41),
ଡା. ଆନି ବେସାନ୍ତ ରୋଡ,
ୱର୍ଲି, ବମ୍ବେ-୪୦୦ ୦୨୫




ସର୍ବାଙ୍ଗୀନ ବୃଦ୍ଧି ବିକାଶ ପାଇଁ ଆପଣଙ୍କ ଶିଶୁକୁ ଦିଅନ୍ତୁ ପୁଷ୍ଟିଗୁଣରେ ପରିପୂର୍ଣ୍ଣ ଫ୍ୟାରେକ୍ସ ।

**ଫ୍ୟାରେକ୍ସ®**
ବୃଦ୍ଧି ବିକାଶ ପାଇଁ ଅଧି...

*McDowell*



# ଚନ୍ଦ୍ରମାମୁଁ

ଜୁନ ୧୯୮୬



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୫୦
ବାର୍ଷିକ ମୂଲ୍ୟ : ୩୦-୦୦

Anil Kumar Panigrahy

ଆନନ୍ଦଦାୟକ ଓ ସ୍ୱାଦ ପାଇଁ
ସାଂଗସାଥୀଙ୍କ ଗହଣରେ




everest/d87/MDR/110 ori

Artificially flavoured.
Contains no fruit juice or fruit pulp.

ସ୍ୱାଦପୂର୍ଣ୍ଣ ଓ ଆନନ୍ଦଦାୟକ
କମଳା ସୁବାସିତ ପାଣିରେ

From McDowell

No share prices,
no political fortunes, yet...

**Over 40% of Heritage readers are professionals or executives, 61% from households with a professional / executive as the chief wage earner. Half hold a postgraduate degree or a professional diploma.**

– from an IMRB survey conducted in Oct. 1986




It's an unusual magazine. It has a vision for today and tomorrow.

It features ancient cities and contemporary fiction, culture and scientific developments, instead of filmstar interviews and political gossip. And it has found a growing readership, an IMRB survey reveals. Professionals, executives and their families are reading The Heritage in depth – 40% from cover to cover, 42% more than half the magazine.

More than 80% of The Heritage readers are reading an issue more than once.

And over 90% are slowly building their own Heritage collection.

Isn't it time you discovered why?

THE HERITAGE

**So much in store, month after month.**

CMP-2155




Anil Kumar Panigrahi

# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

---

ଏ ସଂଖ୍ୟାର ଚିତ୍ରକଥାରେ ସାଞ୍ଚିର ବିଶାଳ ବୌଦ୍ଧସ୍ତୂପ ବିଷୟ ଜାଣିବ । ଆମ ରାଜ୍ୟର କଟକ ଜିଲ୍ଲାରେ ଆବିଷ୍କୃତ ଲଳିତଗିରି, ଉଦୟଗିରି ଓ ରତ୍ନଗିରି ବିଷୟ ଜାଣିଛ କି ? ସମ୍ଭବତଃ ସାଞ୍ଚି ସ୍ତୂପର ସମସାମୟିକ ଏ ଅଞ୍ଚଳରେ ମଧ୍ୟ ଗଢ଼ ଉଠିଥିଲା ବିଶାଳ ବୌଦ୍ଧବିହାର । ଅଦ୍ୟାବଧି ଏହାର ଇତିହାସ ମିଳି ନାହିଁ । ଏ ବିରାଟ ଅଞ୍ଚଳରେ ଖନନ କାର୍ଯ୍ୟ ଚାଲିଛି ।

## ଅମରବାଣୀ

ବ୍ରହ୍ମାଘ୍ନେଚ ସୁରପେଚ ଚୌରେ ଭଗ୍ନବ୍ରତେ ତଥା ।
ନିଷ୍କୃତିର୍ବିହିତା ସଦ୍ଭିଃ, କୃତଘ୍ନେ ନାସ୍ତି ନିଷ୍କୃତିଃ ॥

[ଜ୍ଞାନୀମାନେ ବ୍ରହ୍ମହତ୍ୟାକାରୀ, ମଦ୍ୟପ, ଚୋର ଏବଂ ବ୍ରତ-ଭଙ୍ଗକାରୀ ଭଳି ସବୁ ପାପୀର ନିଷ୍କୃତିର ମାର୍ଗ ଦେଖାଇଛନ୍ତି, କିନ୍ତୁ କୃତଘ୍ନ ପାଇଁ ମୁକ୍ତିର ମାର୍ଗ ଦେଖାଇ ନାହାନ୍ତି ।]

---

ବର୍ଷ : ୨୦ ଜୁନ ୧୯୮୭ ଅଙ୍କ : ୧୨

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

# ସ୍ୱପ୍ନ ସତ ହେଲା

ଜଣେ ପାଇଲଟ୍ । ତାହାହିଁ ହେବାକୁ ସେ, ସର୍ବଦା ଚାହୁଁଥିଲେ । ଆଉ ସେ, ଯେତେବେଳେ ଛୋଟ ପିଲାଥିଲେ, ସେତେବେଳେ କେବଳ ସେହି ବିଷୟରେ ହିଁ କହୁଥିଲେ । ମୋର ମନେଅଛି,—ସେ କିପରି ସୁସ୍ଥ-ସବଳ ହୋଇ ବଢିବ, ସେଥିପାଇଁ ଦିନରେ ଦୁଇଥର ହର୍ଲିକ୍ସ୍ ପିଇବା ସକାଶେ ମୁଁ ତାକୁ କହୁଥିଲି ।

ଆଉ ଏବେ ସେହିକଥା ସତ ହୋଇଛି । ଆମେ ତାର, ଦିନକୁ ଦୁଇଥର ହର୍ଲିକ୍ସ୍ ପିଇବାର ଯେଉଁ ଅଭ୍ୟାସ ପକେଇଥିଲୁ, ବର୍ଷ ବର୍ଷ ଧରି ସେହି ଅଭ୍ୟାସ, ଏପର୍ଯ୍ୟନ୍ତ ତାର ରହିଛି । ସେଥିପାଇଁ ମୁଁ ଆଜି ବହୁତ ଖୁସି ।



ଏହା ବର୍ଦ୍ଧନଶୀଳ ଶିଶୁମାନଙ୍କ ପାଇଁ ଭଲ ।

ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ । ଏଥିରେ କ୍ରୀମଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ ସୁନେଲି ଗହମର ସମସ୍ତ ପୋଷଣକାରି ଗୁଣ ଭରି ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର ୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।




ପୁଷ୍ଟି ଯୋଗାଇବାରେ ଅତୁଳନୀୟ

HMM-9240 ORI

## ଜହ୍ନମାମୁଁ ସମ୍ବାଦ-ଚଉଡ଼ା



### ସ୍ୱପ୍ନରୁ ଲାଭ!

ଦ୍ୱିତୀୟ ମହାଯୁଦ୍ଧରେ ଜଣେ ରୁଷ୍ ସୈନିକ କଥା କହିବା ଶକ୍ତି ଓ ଶୁଣିବା ଶକ୍ତି ହରାଇଥିଲେ । ସେ ନିକଟରେ ଦିନେ ସ୍ୱପ୍ନ ଦେଖିଲେ, ଜାପାନୀ ସୈନିକମାନେ କମାଣ ଦାଗେଇ ତାଙ୍କ ଆଡ଼େ ଆଗେଇ ଆସୁଛନ୍ତି । ସେ ଚିତ୍କାର କରି ସେମାନଙ୍କୁ ପ୍ରତିରୋଧ କରିବା ନିମନ୍ତେ ଅଗ୍ରସର ହେଲେ । ନିଦ ଭାଙ୍ଗିଗଲା । ଦେଖିବା ବେଳକୁ ସେ କଥା କହି ପାରୁଛନ୍ତି ଓ ଶୁଣିବ ପାରୁଛନ୍ତି !

### ମାର୍କ ଟ୍ୱାଇନ : ନୂତନ ଆବିଷ୍କାର

"ହାକ୍‌ଲବାର ଫିନ୍", "ଟମ ସ୍ୱେଆର" ଇତ୍ୟାଦି ମାର୍କ ଟ୍ୱାଇନ୍‌ଙ୍କ ବିଖ୍ୟାତ ବହି ପଢିଥିବ ନିଶ୍ଚୟ । ସେ ୧୯୧୦ ରେ ମୃତ୍ୟୁ ବରଣ କରିଥିଲେ । ତାଙ୍କ ଲେଖା ଶେଷ ଉପନ୍ୟାସର ପାଣ୍ଡୁଲିପି ହଠାତ୍ ମିସୁରୀ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ଆବିଷ୍କାର କରିଛନ୍ତି ।





### ଉପକାରୀ ଅଶ୍ରୁ!

ଅଶ୍ରୁପାତ କରିବା ଦ୍ୱାରା ଯେ ଖାଲି ଆବେଗ ଶାନ୍ତ ହୁଏ, ତାହା ନୁହେଁ, ଅସୁସ୍ଥ ଲୋକକୁ ସୁସ୍ଥ କରିବା ଦିଗରେ ମଧ୍ୟ ଏହା ସାହାଯ୍ୟ କରେ ବୋଲି ବୁଟ୍‌ର କେତେକ ଗବେଷକ କହୁଛନ୍ତି ।

### ମର୍କଟ-ସନ୍ଧାନୀ!

ସାନ୍‌ଫ୍ରାନ୍‌ସିସ୍‌କୋର ଜଣେ ଭଦ୍ରଲୋକଙ୍କର ଗୋଟାଏ ଅଦ୍ଭୁତ ଶକ୍ତି ଅଛି । ସେ ଆଖପାଖରେ କେଉଁଠି ମାଙ୍କଡ଼ଟିଏ ଥିଲେ ତାହା ଜାଣି ପାରନ୍ତି । ତେଣୁ ଚିଡ଼ିଆଖାନାରୁ ମାଙ୍କଡ ପଳାଇଲେ ତାଙ୍କ ସାହାଯ୍ୟରେ ମାଙ୍କଡ଼ ଠାବ ହୁଏ । ଅବଶ୍ୟ ମାଙ୍କଡ଼କୁ ପୁଣି ଚିଡ଼ିଆଖାନାକୁ ଆଣିବା କାଠିକର ହୋଇଥାଏ ।



ପ୍ରାଚୀନ ସାହିତ୍ୟର ଚରିତ :

# ଜାଜାଲି

ଜାଜାଲି ଥିଲେ ଜଣେ ତରୁଣ ଋଷି । ସେ ଥରେ ଥରେ ବଣ ଭିତରେ ଏକାଧିକ୍ରମେ ଦୀର୍ଘ ସମୟ ତପସ୍ୟା କରୁଥିଲେ । ଭୀଷଣ ଜନ୍ତୁ ଜାନୁଆର ବା ଝଡ଼ ବର୍ଷା ଖରା କିଛି ତାଙ୍କୁ ଟଳାଇ ପାରୁ ନଥିଲା ।

ପରେ ସେ ଠିଆ ହୋଇ ତପସ୍ୟା କରିବାର ସିଦ୍ଧାନ୍ତ ନେଲେ । ସେ ଗୋଟିଏ ନିର୍ଜନ ସ୍ଥାନ ବାଛି ସେଠି ମୋଟେ ହଲଚଲ୍ ନ ହୋଇ ଠିଆ ହୋଇ ରହିଲେ । ଦୁଇଟି ପକ୍ଷୀ ତାଙ୍କ ମୁଣ୍ଡରେ ବସିଲେ । କ୍ରମେ ସେମାନେ ସେଠି ବସା ବାନ୍ଧିଲେ । ଜାଜାଲି ପରେ ବି ନିଜ ସ୍ଥିତିରେ ପରିବର୍ତ୍ତନ କଲେ ନାହିଁ । ପକ୍ଷୀଟିଏ ତାଙ୍କ ମୁଣ୍ଡରେ ବନ୍ଧା ବସାରେ ଅଣ୍ଡା ବି ଦେଲା । ତା'ପରେ ଅଣ୍ଡା ଫୁଟି ଛୁଆ ବାହାରିଲେ ଓ ଦିନେ ସବୁ ପକ୍ଷୀ ଉଡ଼ିଗଲେ ।

ତା'ପରେ ବି ଜାଜାଲି ମାସଟିଏ ଅପେକ୍ଷା କଲେ । ପକ୍ଷୀମାନେ ଫେରିଲେ ନାହିଁ । ସେବେ ଯାଇ ସେ ସମୁଦ୍ରକୁ ଯାଇ ସ୍ନାନ କଲେ ।

ସେ ଯେପରି ଧୈର୍ଯ୍ୟ ଦେଖାଇଲେ, ତା'ର ପଟାନ୍ତର ନାହିଁ, ଏହା ଭାବି ସେ ଥରେ ଗର୍ବରେ ହସି ଦେଲେ । ସଙ୍ଗେ ସଙ୍ଗେ ଜଳରାଶିରୁ ବାହାରି ପଡ଼ିଲା ଏକ ରାକ୍ଷସ । ସେ କହିଲା, "ଜାଜାଲି ! ଭଲକାମ ସହ ଗର୍ବ ରହିଲେ ଭଲ କାମର ଫଳ କିଛି ମିଳେ ନାହିଁ । ତମେ ନମ୍ର ହେବା ଉଚିତ ।"

ଜାଜାଲି ନିଜ ଭୁଲ ବୁଝିଲେ । ରାକ୍ଷସର ପରାମର୍ଶ ମାନି ସେ ବାରାଣସୀ ଯାଇ ତୁଳାଧର ନାମକ ବଣିକଠୁଁ ନମ୍ରଗୁଣ ଶିଖିଲେ ।





# ଯାହାର ଯାହା ପ୍ରାପ୍ୟ!

ଗୋଟାଏ ଗାଁରେ ଶିବଦାସ ନାମକ ଲୋକଟିଏ ବାସ କରୁଥାଏ । ତା'ର ସାମାନ୍ୟ ଯେତକ ଜମିବାଡ଼ ଥାଏ, ସେଥିରେ ତା' ପରିବାର କୌଣସି ମତେ ଚଳି ଯାଉଥାନ୍ତି । ଅବଶ୍ୟ ସେପାଇଁ ତା'କୁ, ତା' ସ୍ତ୍ରୀ ତଥା ପୁଅ ଝିଅଙ୍କୁ ବେଶ୍ ପରିଶ୍ରମ କରିବାକୁ ପଡୁଥାଏ ।

ବର୍ଷେ ଗାଁ ପାଖଦେଇ ଯାଇଥିବା ନଈରେ ଭୀଷଣ ବଢ଼ି ହେଲା । ଶିବଦାସର ଫସଲ ତକ ଯେ ଧୋଇଗଲା, ସେତକ ନୁହେଁ, ବଢ଼ି ଘୁଞ୍ଚିବା ବେଳକୁ ଦେଖାଗଲା ଯେ ନଈର ଗତି ବଦଳି ଯାଇଛି ଓ ଫଳରେ ତା' ଜମିତକ ନଈ ଗର୍ଭରେ ଲୀନ ହୋଇଛି ।

ଗାଁର ଜମିଦାର ତାକୁ କହିଲେ, "ଶିବଦାସ! ଚିନ୍ତା କରନା । ମୋ ଜମିରୁ କିଛି ଚାଷ କର । ମୋତେ କିନ୍ତୁ ପ୍ରତି ବର୍ଷ ଠିକାରେ ଜମିର ଭଡ଼ା ଦେବାକୁ ହେବ । ଫସଲ ହେଉ ବା ନହେଉ । ଏହି ମୋର ସର୍ତ୍ତ ।"

ଜମିଦାରଙ୍କ ଛଡ଼ା ଆଉ କାହାରି ତାକୁ ଦେଲା ଭଳି ଅଧିକା ଜମି ନଥିଲା । ତେଣୁ ସେ ସର୍ତ୍ତରେ ରାଜି ନହୋଇ ଉପାୟ କ'ଣ? ଜମିଦାରଙ୍କ ଜମି ତା' ନିଜ ଜମି ଭଳି ଭଲ ବି ନୁହେଁ । ତଥାପି ସେ ବହୁତ ପରିଶ୍ରମ କରି ନିଜ ଗୁଜରାଣ ମେଣ୍ଟାଇବା ସଙ୍ଗେ ସଙ୍ଗେ ଜମିଦାରଙ୍କୁ ତାଙ୍କ ପ୍ରାପ୍ୟ ବି ଦେଲା ।

କେଇ ବର୍ଷ ଗଲା । ବର୍ଷେ ବର୍ଷା ହେଲା ନାହିଁ । ଫଳରେ ଫସଲ ହେଲା ନାହିଁ । ଶିବଦାସର ପରିବାରକୁ ଦୁଇଓଳି ଖାଇବାକୁ ବି ଜୁଟିଲା ନାହିଁ । ସେ ଯାଇ କାକୁସ୍ଥ ହୋଇ ଜମିଦାରଙ୍କୁ କହିଲା, "ବାବୁ, ମୋ ଅବସ୍ଥା ତମକୁ ଅଜଣା ନୁହେଁ । ଏ ବର୍ଷ ମୁଁ ଭଡ଼ା ଦେଇ ପାରିବ ନାହିଁ ।"

ଯେସାନୁ ତେସା

"ଆରେ ଶିବୁ! ମୁଁ ନୀତିବାନ୍ ଲୋକ । ସର୍ତ୍ତ କେବେ ଭାଙ୍ଗିବି ନାହିଁ । ଅର୍ଥାତ୍ ତୋତେ ଭଡ଼ା ଛାଡ଼ ଦେବାର ପ୍ରଶ୍ନ ଉଠୁ ନାହିଁ । ଯେମିତି ହେଲେ ଆଦାୟ କରିବି ।" ଜମିଦାର କହିଲେ ।

ଶିବଦାସ ସରଳ ଲୋକ । ସେ ଭାବିଲା, ଜମିଦାର ଯେତେବେଳେ ନିଜ ନେବା ନୀତିରେ ଅଟଳ, ମୁଁ ବି ଦେବା ନୀତିରେ ଅଟଳ ହେବା ଲୋଡ଼ା ।

କିନ୍ତୁ ସେ ଦେବା ନିମନ୍ତେ ଆଣିବ କାହୁଁ ? ତା'ର ଯୋଡ଼ିଏ ବଳଦ ଥିଲେ । ଏକମାତ୍ର ସେଇ ସମ୍ପତ୍ତି ବଳେ ସେ କିଛି ଟଙ୍କା ପାଇ ପାରିବ ।

ସେ ବଳଦଟିଏ ଧରି ଦୂରବର୍ତ୍ତୀ ଗୋରୁ ହାଟ ଅଭିମୁଖେ ବାହାରିଲା । ବାଟ କମ୍ ପଡ଼ିବ ବୋଲି ସେ ପାଖରେ ଥିବା ବଣ ଭିତରେ ପଶିଲା ।

ଖରାବେଳ । ହଠାତ୍ ତା' କାନରେ ପଡ଼ିଲା ଗୋଟାଏ ଅଦ୍ଭୁତ କଣ୍ଠସ୍ୱର : "ଭାଇ, ମୋତେ ଟିକିଏ ସାହାଯ୍ୟ କରିବ ?"

ସେ ଏଣେ ତେଣେ ଅନାଇଲା । ଦେଖିଲା ବେଳକୁ ଅପୂର୍ବ ସାଜ ପୋଷାକ ପିନ୍ଧି ଗୋଟାଏ ଗଛ ମୂଳରେ ବାମନଟିଏ ଠିଆ ହୋଇଛି ଓ ତା' ଆଡ଼େ ଅନାଇ ହସୁଛି ।

"କି ପ୍ରକାର ସାହାଯ୍ୟ ଚାହୁଁଛ ?" ଶିବଦାସ ପଚାରିଲା ।

"ମୁଁ ବଣର ଆର ସୀମାକୁ ଯିବି । କିନ୍ତୁ ମୋତେ ହାଲିଆ ଲାଗୁଛି । ତମେ ଟିକିଏ ନେଇଯିବ ?" ବାମନ ପଚାରିଲା ।



"ଆରେ ଭାଇ, ଜଣେ ସାଥି ପାଇଲେ ତ ମୁଁ ଖୁସି ହେବି । କିନ୍ତୁ ମୁଁ ନିଜେ କମ୍ ଚାଲିଆ ନୁହେଁ । ତମକୁ କାନ୍ଧରେ ବସାଇ ବେଶି ଦୂର ଯାଇପାରିବି ନାହିଁ । ମୋ ସାଙ୍ଗରେ ଘୋଡ଼ା ବା ଗଧ ନାହିଁ ବୋଲି ତ ଦେଖୁଛ !" ଶିବଦାସ କହିଲା ।

"କିନ୍ତୁ ତମ ପାଖରେ ତ ବଳଦ ଅଛି । ବଳଦ ଉପରେ ବସିବା ପାଇଁ ବହୁ ଦିନରୁ ମୋର ଆଶା ଥିଲା !" ବାମନ କହିଲା ।

"ସତେ ?" ଏହା କହି ଶିବଦାସ ବାମନକୁ ଟେକି ନେଇ ବଳଦ ଉପରେ ବସାଇ ଦେଲା । ତା'ପରେ ସେମାନଙ୍କ ଯାତ୍ରା ପୁଣି ଆରମ୍ଭ ହେଲା । ବାଟରେ ଗପସପ ହେବା ଭିତରେ ଶିବଦାସ ତା' ଦୁଃଖ କଥା ଗପିଲା ।

ବାମନ ସବୁ ଶୁଣି କହିଲା, "ଶିବଦାସ ! ମୁଁ ବୁଝୁଛି ତମେ ବହୁତ ଚାଲିଆ ହେଲଣି । ହାଟ ଆହୁରି ଗୁଡ଼ାଏ ବାଟ । ଫେରିବା ବେଳକୁ ଆହୁରି ଚାଲିଆ ହୋଇଯିବ । ଗୋଟାଏ କାମ କର । ବଳଦଟି ମୋତେ ବିକିଦିଅ ।"

ଶିବଦାସ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "ତମେ ବଳଦ କିଣିବାକୁ ଚାହଁ ଓ ତମଠି ଯଥେଷ୍ଟ ଟଙ୍କା ଅଛି ? ସେକଥା ତ ଜାଣି ନଥିଲି ।"

"ନା, ମୋଠି ଟଙ୍କା ନାହିଁ । କିନ୍ତୁ ଯାହା ଅଛି, ସେଥିରେ ଚଳିବ ।" ଏହା କହି ବାମନ ଶିବଦାସକୁ ଗୋଟିଏ ପିତଳ ପାତ୍ର ଧରାଇ ଦେଲା ଓ ବେଗି ବେଗି ଚାଲିଗଲା ।

ଶିବଦାସ ବଡ଼ ଅଡୁଆରେ ପଡ଼ିଲା । ବଳଦର ଦାମ୍ ବିଷୟରେ ବାମନର ଧାରଣା





ନାହିଁ ନିଶ୍ଚୟ । କିନ୍ତୁ ତାକୁ ସେକଥା କହିଲେ ସେ ଦୁଃଖ ପାଇବ । ତଥାପି ସେ ଜମିଦାରକୁ ତା' ପ୍ରାପ୍ୟ ଦେବ କିପରି ?

"ଆରେ ଭାଇ, ଏଇଟା ତ ଗୋଟାଏ ଖାଲି ପାତ୍ର ମାତ୍ର!" ସେ କୌଣସି ମତେ କହିଲା ।

"ସେଥିରେ ହାନି ହେଲା କ'ଣ ? ତମେ ଘରକୁ ଯାଅ । ନିଜ ଦିଅଁଙ୍କ ସ୍ମରଣ କରି ପାତ୍ରଟି ସଫା ଚଟାଣ ଉପରେ ଥୋଇବ ଓ ତା'ର ଢୋଡ଼ଣୀ ଖୋଲି ତାକୁ କହିବ କି ତମର ଯାହା ପ୍ରାପ୍ୟ ତାହା ମିଳୁ । ତେଣିକି ଦେଖିବ ।" ଏହା କହି ବାମନ ବଣ ବୁଦା ଭିତରେ ଲୁଚିଗଲା ।

ଶିବଦାସ କପାଳରେ ହାତ ମାରି ଘରକୁ ଫେରିଲା । ସବୁ ଶୁଣି ତା' ସ୍ତ୍ରୀ କହିଲା, "ହୁଏତ ପାତ୍ରର କିଛି ଗୁଣ ସତରେ ଥିବ ।" ଏହା ପରେ ସେମାନେ ଚଟାଣ ଧୋଇ ନିଜ ଇଷ୍ଟଙ୍କୁ ପ୍ରାର୍ଥନା କରି ପାତ୍ରଟି ତଳେ ଥୋଇଲେ । ଶିବଦାସ ତା' ଢ଼ାଙ୍କୁଣି ଖୋଲି କହିଲା, "ଆମର ଯାହା ପ୍ରାପ୍ୟ ଆମକୁ ଦିଅ !"

ତତ୍‌କ୍ଷଣାତ୍ ଯୋଡ଼ିଏ ବାମନ ପାତ୍ରରୁ ବାହାରି ଉପରେ ଉଡ଼ି ଉଡ଼ି ଟଙ୍କା ବର୍ଷା କଲେ । ଘର ଭିତରେ ଯେତେ ପାତ୍ର ଥିଲା, ସବୁଥିରେ ଟଙ୍କା ଭର୍ତ୍ତି ହୋଇ ତା'ପରେ ବିଛଣା ଓ ସିନ୍ଦୁକ ଉପରେ ବି ଓଜାଡ଼ି ହୋଇ ପଡ଼ିଲା । କିଛି ସମୟ ପରେ ଦୁଇ ବାମନ ସେ ପାତ୍ର ଭିତରେ ପଶି ଅଦୃଶ୍ୟ ହୋଇଗଲେ । ଶିବଦାସ ଢ଼ାଙ୍କୁଣି ଦେଇଦେଲା ।

ଶିବଦାସ ଯାଇ ଆନନ୍ଦରେ ଜମିଦାରଙ୍କୁ ତାଙ୍କ ପ୍ରାପ୍ୟ ଦେଲା ଓ ନିଜ ପରିବାର ପାଇଁ ଭଲ ପୋଷାକ ଓ ଭଲ ପରିବାପତ୍ର କିଣିଲା । ବହୁଦିନ ପରେ ସେମାନେ ଭଲ କରି ଖିଆପିଆ କଲେ । ପରଦିନ ସେ ଯାଇ ଜମିଦାରଙ୍କୁ ପଚାରିଲା, "ଆପଣଙ୍କର ଭଲ ଜମିରୁ କିଛି ବିକିବେ ?"

ଜମିଦାରଙ୍କ ଆଖି ଖୋସି ହୋଇଗଲା । ସେ କିଛି କହିପାରିଲେ ନାହିଁ । ସେ କ୍ରମେ ଶୁଣିଲେ କି ଶିବଦାସ ଗୋଟାଏ ଯାଦୁପାତ୍ରରୁ ମନ ଇଚ୍ଛା ଟଙ୍କା ପାଉଛି ।

ଦିନେ ଶିବଦାସ ଘରେ ନଥିଲା ବେଳେ ଜମିଦାର କେତେଜଣ ଲୋକଙ୍କୁ ଧରି ତା' ଘରେ ପଶି ପାତ୍ରଟି ନେଇ ଆସିଲେ । ଶିବଦାସ ଆସି ଦେଖିଲା, ତା' ସ୍ତ୍ରୀ କାନ୍ଦୁଛି । ସେ କହିଲା, "ଦେଖ, ଦିନେ ପାତ୍ର ଆମ ପାଖକୁ ଦୈବାତ୍ ଆସିଥିଲା । ଆମେ ତାକୁ ଉପାର୍ଜନ କରି ନଥିଲୁଁ । ସେଇଟି ଗଲା ବି ଗଲା । ଦୁଃଖ କରିବା କାହିଁକି ?"

କିନ୍ତୁ ମନ କି ସହଜରେ ବୁଝେ ?

ତେଣେ ଜମିଦାର ସେ ପାତ୍ରକୁ ଧରି ନାନାଦି ଜିନିଷ ମାଗିବାକୁ ଲାଗିଲା । କିନ୍ତୁ ପାତ୍ରରୁ କିଛି ବାହାରିଲା ନାହିଁ । ସେଉଠୁ ସେ ଶିବଦାସକୁ ଡକାଇ କହିଲା, "କିପରି ଭାବରେ ପାତ୍ରରୁ ଲାଭ ମିଳେ କହ ।"

"ବାବୁ, ମୁଁ ଖାଲି ମୋ ଇଷ୍ଟଙ୍କୁ ପ୍ରାର୍ଥନା କରି ପାତ୍ରକୁ କହିଥିଲି କି ମୋର ଯାହା ପ୍ରାପ୍ୟ ତାହା ମିଳୁ ।" ଶିବଦାସ ସରଳରେ କହିଲା ।

ଜମିଦାର କହିଲେ, "ମୁଁ ବି ସେଇଆ କରିବି । ଏଇଠି ରହିଥା । ଫଳ ନ ହେଲେ ତୋତେ ବାଡେଇବି ।"

ଏହାପରେ ଜମିଦାର ଇଷ୍ଟଙ୍କୁ ଥରେ ଡାକି ଦେଇ ପାତ୍ରର ଢାଙ୍କୁଣି ଖୋଲି କହିଲେ, "ମୋର ଯାହା ପ୍ରାପ୍ୟ, ତାହା ମିଳୁ ।"

ତତ୍କ୍ଷଣାତ୍ ଦୁଇଟି ଭୟଙ୍କର ମଣିଷ ପାତ୍ରରୁ ବାହାରି ଆସି ଲାଠିରେ ଜମିଦାରଙ୍କୁ ପିଟିବାକୁ ଲାଗିଲେ । ଜମିଦାର ଯେତେ ଉଃ ଆଃ କଲେ ବି ସେମାନେ ଶୁଣୁ ନଥାନ୍ତି । ଲୋକ ଜମା ହୋଇ ସେ ଦୃଶ୍ୟ ଦେଖିଲେ ।

"ଆରେ ଶିବଦାସ ! ମୋତେ କ୍ଷମା କର । ତୋ ପାତ୍ର ତୁ ନେଇଯା !" ଜମିଦାର ଆର୍ତ୍ତନାଦ କରି କହିଲେ ।

ତତ୍କ୍ଷଣାତ୍ ସେ ଭୀଷଣ ଲୋକ ଦୁଇଟି ପାତ୍ରରେ ପଶିଯାଇ ଅଦୃଶ୍ୟ ହୋଇଗଲେ । ଶିବଦାସ ପାତ୍ରଟି ଉଠାଇ ନେଇ ଆନନ୍ଦରେ ଘରକୁ ଲେଉଟିଲା ।





# ଉପହାର

ଶାନ୍ତା ବଡ଼ ଅଡୁଆରେ ପଡ଼ିଲା । ସେ ସୁଦର୍ଶନକୁ ବିଭା ହେବାକୁ ଚାହୁଁଥିଲା । କିନ୍ତୁ ତା' ବାପାଙ୍କ ଇଚ୍ଛା ସେ ପ୍ରବୋଧକୁ ବିଭା ହେଉ । କଥା ହେଲା, ପ୍ରବୋଧ ବିରାଟ ଜମିଦାରଙ୍କ ଏକମାତ୍ର ପୁଅ । ଶାନ୍ତାର ବାପା ସୁରେନ୍ଦ୍ର ବାବୁ ଓ ଜମିଦାର ଥିଲେ ଦୁଇ ବନ୍ଧୁ ।

ସେପଟେ ସୁଦର୍ଶନ ଓ ପ୍ରବୋଧ ବି ଥିଲେ ଦୁଇ ବନ୍ଧୁ । ବାସ୍ତବରେ ପ୍ରବୋଧ ଜାଣିଥିଲା କି ସୁଦର୍ଶନ ଓ ଶାନ୍ତା ପରସ୍ପର ବିଭା ହେବାକୁ ଚାହାନ୍ତି । ସେ କୌଣସି ମତେ ସେଥିରେ ବାଧା ଉପୁଜାଇବାକୁ ଚାହୁଁ ନଥିଲା । କିନ୍ତୁ ତା' ବାପା ଜମିଦାରଙ୍କ ବ୍ୟକ୍ତିତ୍ୱ ଏପରି ଯେ ତାଙ୍କ ଆଗରେ ସିଧା ହୋଇ ଠିଆ ହେବାକୁ ବି ତା'ର ସାହସ ନଥିଲା ।

"ଝିଅ, ଆଉ ବିଳମ୍ବ କରି ଲାଭ ନାହିଁ । ଭଲ ଦିନ ଆସୁଛି । ତୋ ସହ ପ୍ରବୋଧର ବିବାହ ସମାଧା କରିଦେଲେ ମୋ ମୁଣ୍ଡରୁ ବୋଝ ଯିବ । ତୋର କିଛି କହିବାର ଅଛି କି ?" ଶାନ୍ତା ଟିକିଏ ଇତସ୍ତତଃ କରି କହିଲା, "ବାପା ! ତୁମେ ଯାହା କରୁଛ, ତାହା ମୋ ମଙ୍ଗଳ ଚିନ୍ତାରେହିଁ କରୁଛ । ତେବେ ପ୍ରବୋଧକୁ ତା' ମନ କଥା ପଚାରି ବୁଝିଛ କି ନାହିଁ, ମୁଁ ଜାଣେ ନା । ସେ କ'ଣ ମୋତେ ବିଭା ହେବାକୁ ଚାହେଁ ? ତା' ଛଡ଼ା, ବାପା, ଆଉ କେଉଁଠାରୁ କିଛି ପ୍ରସ୍ତାବ ଆସି ନାହିଁ ?"

"ଆରେ ଝିଅ, ଏ ବିଷୟରେ ପ୍ରବୋଧକୁ ପଚାରିବା ଦରକାର କ'ଣ ? ସେ କ'ଣ କେବେ ବି ତା' ବାପାର ଇଚ୍ଛା ବିରୁଦ୍ଧରେ ଯିବ ? ଆଉ ପ୍ରସ୍ତାବ କଥା ଯେ କହିଲୁ, ବହୁତ ସ୍ଥାନରୁ ବହୁତ ପ୍ରସ୍ତାବ ଆସିଛି ମୋ ଗୁଣବତୀ ଝିଅ ପାଇଁ । କିନ୍ତୁ ମୁଁ ତୋତେ

ଯାହା ଫେରାଇବା ଅସମ୍ଭବ !

ଦୂରକୁ ପଠାଇବାକୁ ପ୍ରସ୍ତୁତ ନୁହେଁ । ଏ ଗାଁରୁ ଆଉ ଗୋଟାଏ ମାତ୍ର ପ୍ରସ୍ତାବ ଅଛି । ସୁଦର୍ଶନ ସହିତ ।"

"ସେଥିରେ ଆପତ୍ତି କ'ଣ ?" ଶାନ୍ତା ନିଜ ଦ୍ୱିଧା କଟାଇ ପଚାରିଲା ।

ସୁରେନ୍ଦ୍ରବାବୁ ଶାନ୍ତ କଣ୍ଠରେ କହିଲେ, "ସୁଦର୍ଶନ ଭଲ ପିଲା ଯେ ହେଲେ ତା'ର ଅଛି କ'ଣ ?"

"ବାପା ! ଗତ ରାତିରେ ସ୍ୱପ୍ନ ଦେଖିଲି ମୋ ମା ମୋତେ କହୁଛନ୍ତି କି ଯିଏ ମୋତେ ଏଭଳି ଗୋଟାଏ ଉପହାର ଦେବ ଯେଉଁ ଉପହାର କି ମୁଁ ଫେରାଇଦେଇ ପାରିବି ନାହିଁ, ତାକୁହିଁ ମୁଁ ବାହା ହେବା ଉଚିତ ।" ଶାନ୍ତା କହିଲା ।

ତାଙ୍କ ପରଲୋକଗତା ସ୍ତ୍ରୀ କଥା ପଡିଲେ ସୁରେନ୍ଦ୍ରବାବୁ ଚୁପ୍ ହୋଇ ଯାଆନ୍ତି । ସେ ଟିକିଏ ଭାବିଲେ ଓ ତାଙ୍କ ମୁହଁରେ ହସ ଫୁଟି ଉଠିଲା । ସେ କହିଲେ, "ତେବେ ତ ତୋ ବୋଉ ମୋହର ପ୍ରସ୍ତାବର ସମର୍ଥନ କରୁଛନ୍ତି !" ଏହା କହି ସେ ଚାଲିଗଲେ । ସେ ଅବଶ୍ୟ ବୁଝିଲେ ଯେ ଝିଅ ପ୍ରବୋଧ ଓ ସୁଦର୍ଶନ ଭିତରୁହିଁ ଜଣକୁ ବାହା ହେବ ।

ଏହାର ମାସକ ପରେ ପ୍ରବୋଧ ତରଫରୁ ଶାନ୍ତା ପାଖରେ ଆସି ଯେଉଁ ଉପହାର ପହଞ୍ଚିଲା, ତାହା ହୀରାର ଗୋଟିଏ ହାର । ଅର୍ଥାତ୍ ସୁରେନ୍ଦ୍ରବାବୁ ଓ ଜମିଦାର ଧରିନେଇଥିଲେ କି ଉପହାର ଅତି ମୂଲ୍ୟବାନ ହୋଇଥିଲେ ତାକୁ ଫେରାଇ ଦେବାକୁ ଶାନ୍ତାର



ମନ୍ଦ କହିବ ନାହିଁ । ସୁଦର୍ଶନ ହୀରାହାର ତୁଳନାରେ ନିଶ୍ଚୟ କମ ମୂଲ୍ୟର ଉପହାର ହେବ ଏବଂ ଶାନ୍ତା ତାକୁ ଅକ୍ଳେଶରେ ଫେରାଇଦେଇ ପାରିବ ।

କିନ୍ତୁ ପ୍ରବୋଧ ତରଫରୁ ହୀରାହାର ଆସି ପହଞ୍ଚିବା ପରେ ପରେ ସୁଦର୍ଶନ ଆସି ଖଣ୍ଡିଏ ଖାତା ଧରାଇ ଦେଲା । ସେଥିରେ ସେ ଲେଖିଥିଲା ଜୀବନ, ପ୍ରେମ, ବିବାହ ଇତ୍ୟାଦି ସମ୍ପର୍କରେ ଗୋଟିଏ ଦୀର୍ଘ ରଚନା ।

ଶାନ୍ତା ତାହା ପଢ଼ିବା ସଙ୍ଗେ . ସଙ୍ଗେ ସୁରେନ୍ଦ୍ରବାବୁ ବି ତାହା ପଢ଼ିଲେ ଓ ପଢ଼ି ଅବଶ୍ୟ ମୁଗ୍ଧ ହେଲେ । କିନ୍ତୁ ସେ କହିଲେ, "ଏହାକୁ ଫେରାଇ ଦେ ।"

"ବାପା! ମୁଁ ବି ସେଇଆ ଭାବୁଥିଲି । କିନ୍ତୁ ଏହାକୁ ଫେରାଇଦେଇ ହେବ କି? ଖାତା ଖଣ୍ଡିକ ସିନା ଫେରାଇ ଦେଇ ହେବ, କିନ୍ତୁ ସେଥିରେ ଯାହା ଲେଖାଥିଲା, ତାହା ତ ମୁଁ ପଢ଼ିବା ସଙ୍ଗେ ସଙ୍ଗେ ତୁମେ ବି ପଢ଼ି ନେଇଛ! ଅର୍ଥାତ୍ ସବୁଦିନ ପାଇଁ ସେ ଉପହାର ମୋଠିଁ ଓ ତମଠିଁ, ଅର୍ଥାତ୍ ଆମ ଚେତନାରେ ରହିଗଲା! ବୋଉ କହିଥିଲା, ଯାହା ଫେରାଇ ଦେଇ ହେବ ନାହିଁ । ଚେଷ୍ଟା କଲେ ବି ନୁହେଁ । ମୋର ଧାରଣା ଚେଷ୍ଟା କଲେ ଯେତେ ମୂଲ୍ୟବାନ ହାର ହେଲେ ବି ଫେରାଇ ଦେଇ ହେବ । କିନ୍ତୁ ସୁଦର୍ଶନର ଉପହାର ଫେରାଇଦେଇ ହେବ ନାହିଁ । ହେବ କି?" ଶାନ୍ତା ନମ୍ର ଭାବରେ ପଚାରିଲା ।

ସୁରେନ୍ଦ୍ରବାବୁ ନୀରବ ରହିଲେ ଓ କହିଲେ, "ଝିଅ, ମୁଁ କିଛି ଠିକ୍ କହିପାରୁ ନାହିଁ । ତୁ ଯାହା ଠିକ୍ ଭାବୁଛୁ, ତାହା କର ।"

ସୁଦର୍ଶନ ଓ ପ୍ରବୋଧ ଉପରଓଳି ଶାନ୍ତାକୁ ଭେଟିଲେ । ପ୍ରବୋଧ ତା' ହାର ଫେରାଇ ନେଲାବେଳେ କହିଲା, "କିନ୍ତୁ ତମ ବାହାଘର ବେଳେ ଏଇ ଗୋଟିକ ମୁଁ ଉପହାର ଦେବ ।"





# ବହ୍ନି ଦ୍ୱୀପ

[ ୧୨ ]

[ନାଗବର୍ମାର ସୈନ୍ୟମାନଙ୍କ ଭିତରୁ ଅନେକେ ରାକ୍ଷସ ଉଗ୍ରାକ୍ଷ ଓ ତା' ଅନୁଚରମାନଙ୍କ କବଳରେ ପଡି ପ୍ରାଣ ହାରିଲେ ସତ, କିନ୍ତୁ ନାଗବର୍ମା ତଥା ବ୍ୟାଘ୍ରଚର୍ମଧାରୀଙ୍କ ନେତା କରବୀର ବଣ ଭିତରେ କୁଆଡ଼େ ଲୁଚିଗଲେ କେଜାଣି, ଯେତେ ଚେଷ୍ଟା କଲେ ମଧ୍ୟ ସେମାନଙ୍କ ପତ୍ତା ମିଳିଲା ନାହିଁ। ତା'ପରେ...]

ମଣିଷ ଖାଲି ସମସ୍ୟା ଓ ବିପଦ କଥା ଚିନ୍ତା କରି ସବୁଦିନ ରହିପାରେ ନାହିଁ। କ୍ରମେ ନାଗବର୍ମା କଥା ଚନ୍ଦ୍ରସେନ ପ୍ରାୟ ଭୁଲି ଗଲେ ମଧ୍ୟ ତାକୁ ନେଇ ଚିନ୍ତା କରିବା ଆବଶ୍ୟକ ମନେ କଲେ ନାହିଁ। ସେ ତା'ର ସେନାବାହିନୀ ହରାଇଥିଲା। ପୁଣି ଥରେ ନୂଆ ସୈନ୍ୟଦଳ ଗଠନ କରି କୌଣସି ରାଜ୍ୟ ଉପରେ ଉପଦ୍ରବ କରିବାକୁ ହେଲେ ତାକୁ ପ୍ରସ୍ତୁତ ହେବାକୁ ସମୟ ଲାଗିବ। ପୁଣି ସେ ସେଭଳି କୌଣସି କାମ କଲେ ତା'ର ସମ୍ବାଦ ଆସି ନିଶ୍ଚୟ ଚନ୍ଦ୍ରସେନଙ୍କ ପାଖରେ ପହଞ୍ଚିବ। ତେଣୁ ତା' ଚିନ୍ତାରେ ସର୍ବଦା ଆତଙ୍କିତ ରହିବାର ଆବଶ୍ୟକତା ନଥିଲା।




ଯଥାବିଧି ପ୍ରସ୍ତାବ ପରେ ଚନ୍ଦ୍ରସେନଙ୍କ ସହ ରାଜକୁମାରୀ କାନ୍ତିମତୀଙ୍କ ବିବାହ ସମ୍ପନ୍ନ ହୋଇଗଲା । ସେ କାର୍ଯ୍ୟ ଯେପରି ଧୁମ୍‌ଧାମ୍‌ରେ ହେଲା, ସେକଥା ଲୋକେ ଅନେକ ଦିନ ଯାଏ ସ୍ମରଣ କରିବାକୁ ଲାଗିଲେ । ବିବାହ ପରେ ଚନ୍ଦ୍ରସେନ କପିଳପୁରରେହିଁ ରହିଲେ ଓ ରାଜକାର୍ଯ୍ୟ ହାତକୁ ନେଲେ ।

ବିବାହ ଅବସରରେ ଉଗ୍ରାକ୍ଷ ଓ ତା'ର ରାକ୍ଷସଦଳ ପ୍ରଚଣ୍ଡ ଖୁସିରେ ନାନା ଉତ୍ସବରେ ମାତି ରହିଥାନ୍ତି । ସାଧାରଣ ଲୋକେ ପ୍ରଥମେ ପ୍ରଥମେ ରାକ୍ଷସମାନଙ୍କୁ ଭୟ କରୁଥିଲେ, କିନ୍ତୁ କ୍ରମେ ସେମାନେ ଦେଖିଲେ ଯେ ଏ ନିର୍ଦ୍ଦିଷ୍ଟ ରାକ୍ଷସ ଦଳ ସେମାନଙ୍କର କିଛି କ୍ଷତି କରୁ ନାହାନ୍ତି । ରାକ୍ଷସରାଜ ଉଗ୍ରାକ୍ଷ ବାରମ୍ବାର କହୁଥାଏ, "ଚନ୍ଦ୍ରସେନଙ୍କ ସନ୍ତାନ ହେଲେ ତାକୁ ମୁଁ ନେଇଯିବି! ବାଃ, ବାଃ, କେଡ଼େ ମଜା ହେବ । ମୁଁ ସେହିଦିନକୁ ଅପେକ୍ଷା କଲି ।" ତା'ର ଏ ଘୋଷଣା ଶୁଣି ରାଜା ଚନ୍ଦ୍ରସେନ ହସି ଦେଉଥାନ୍ତି । ଅନ୍ୟମାନେ ବିଶେଷ କିଛି ବୁଝିପାରୁ ନଥାନ୍ତି ।

ବିବାହ ଶେଷ ହେବା ପରେ ଓ ଚନ୍ଦ୍ରସେନ ଶାନ୍ତିପୂର୍ଣ୍ଣ ପରିସ୍ଥିତିରେ ରାଜକାର୍ଯ୍ୟ ପରିଚାଳନା ଆରମ୍ଭ କରିବା ପରେ ରାକ୍ଷସ ଉଗ୍ରାକ୍ଷ ତାଙ୍କ ନିକଟରୁ ବିଦାୟ ନେଲା । ସେ ଗଲାବେଳେ କହିଲା, "ମହାରାଜ, ମୁଁ ଏଥର ମୋ ନିଜ ପାର୍ବତ୍ୟ ଦୁର୍ଗକୁ ଚାଲିଲି । କିନ୍ତୁ କୌଣସି ସମୟରେ କୌଣସି ବିପଦ ଦେଖାଦେଲେ ମୋତେ ଖବର ଦେବାକୁ ଭୁଲିବେ ନାହିଁ ।"

ଚନ୍ଦ୍ରସେନ କହିଲେ, "ରାକ୍ଷସରାଜ, ତୁମ ସହାୟତା ବିନା ଆଜି ଆମ ଅବସ୍ଥା କ'ଣ ହୋଇଥାନ୍ତା ସେକଥା କହି ହେଉନାହିଁ । ତେବେ ନାଗବର୍ମା ଓ କରବୀର କେଉଁଠାରେ କ'ଣ କରୁଛନ୍ତି, ସେକଥା ନ ଜାଣିବା ପର୍ଯ୍ୟନ୍ତ ଆମ୍ଭେମାନେ ନିଶ୍ଚିନ୍ତ ହୋଇ ରହିପାରିବା ନାହିଁ ।"

"ଠିକ୍ କଥା, ମହାରାଜ । ଆପଣଙ୍କ ଗୁପ୍ତଚରମାନେ ଯେପରି ସର୍ବଦା ସଜାଗ ରହିବେ, ସେ ଦିଗରେ ବ୍ୟବସ୍ଥା କରିବେ । ମୁଁ ମଧ୍ୟ ମୋ ଗୁପ୍ତଚରମାନଙ୍କୁ ସର୍ବଦା ସଜାଗ

ରଖିଥିବ । ସେ ଦୁଇ ନୃଶଂସ ଶତ୍ରୁଙ୍କ ବିଷୟରେ କୌଣସି ସମ୍ବାଦ ପାଇବା ମାତ୍ରେ ଆପଣଙ୍କୁ ଜଣାଇବ ।" ରାକ୍ଷସ ଉଗ୍ରାକ୍ଷ କହିଲା ।

"ଧନ୍ୟବାଦ । ଏଥର ତୁମେ ଯାଇପାର । ଆମେ ଅବଶ୍ୟ ମଧ୍ୟେ ମଧ୍ୟେ ପରସ୍ପର ଦୂତ ପଠାଉଥିବା ।" ଚନ୍ଦ୍ରସେନ ଖୁସି ହୋଇ କହିଲେ ।

କିନ୍ତୁ ତାଙ୍କ ଆନନ୍ଦ ଅଧିକ ସମୟ ସ୍ଥାୟୀ ହେଲା ନାହିଁ । କାରଣ ଏହା ପରେ ଉଗ୍ରାକ୍ଷ ଯାହା କହିଲା, ତାହା ତାଙ୍କୁ ବିଷାଦଗ୍ରସ୍ତ କଲା । ଉଗ୍ରାକ୍ଷ କହିଲା, "ମହାରାଜ! ଦୂତ ମୁଁ ପ୍ରତି ତିନି ତିନି ମାସ ଅନ୍ତରରେ ପଠାଉଥିବ । କାରଣ ଆପଣଙ୍କ ସନ୍ତାନ ଜନ୍ମ ହେବା ମାତ୍ରେ ମୁଁ ସେ ସମ୍ବାଦ ପାଇବା ଆବଶ୍ୟକ । ସର୍ତ୍ତ ଯେପରି ନ ଭୁଲନ୍ତି! ଆପଣଙ୍କ ସନ୍ତାନକୁ ଠିକ୍ ପାଞ୍ଚବର୍ଷ ବୟସ ହେବା ବେଳକୁ ମୁଁ ଆସି ତାକୁ ନେଇଯିବି!"

ବିମର୍ଷ ଭାବରେ ଚନ୍ଦ୍ରସେନ କହିଲେ, "ଠିକ୍ ଅଛି ।"

ଉଗ୍ରାକ୍ଷ ଖୁସି ହୋଇ ତା' ରାକ୍ଷସବାହିନୀ ଧରି ଚାଲିଗଲା ।

କିଛିଦିନ ଚନ୍ଦ୍ରସେନ ସୁଖଶାନ୍ତିରେ ଶାସନ କଲେ । ତା'ପରେ କିନ୍ତୁ ରାଜ୍ୟର ଭିନ୍ନ ଭିନ୍ନ ସ୍ଥାନରେ ଗୋଟିଏ ଡାକୁଦଳ ଚୋରି, ଲୁଣ୍ଠନ ଇତ୍ୟାଦି କରୁଥିବାର ସମ୍ବାଦ ଆସି ତାଙ୍କ କାନରେ ପହଞ୍ଚିବାକୁ ଲାଗିଲା । ଚନ୍ଦ୍ରସେନଙ୍କ ନିର୍ଦ୍ଦେଶରେ ସେନାପତି ଅମରପାଳ ଭିନ୍ନ ଭିନ୍ନ ସ୍ଥାନକୁ ସୈନ୍ୟଦଳ ପଠାଇଲେ ଓ ସେମାନଙ୍କ ସହ ଦସ୍ୟୁଦଳର ସଂଘର୍ଷ ହେଲା । ଅଧିକାଂଶ କ୍ଷେତ୍ରରେ ଦସ୍ୟୁଦଳର ଲୋକେହିଁ ମଲେ ବା ଆହତ ହେଲେ । ତଥାପି ସେମାନେ ଏତେ ସଂଖ୍ୟାରେ ରାଜ୍ୟର ଭିନ୍ନ ଭିନ୍ନ ସ୍ଥାନ ବ୍ୟାପି ଲୁଟତରାଜ ଚଳାଇଥାନ୍ତି ଯେ ସମସ୍ତଙ୍କୁ ଏକାବେଳେ ଦମନ କରିବା ସହଜ ନଥିଲା । ତେବେ କିଛି ଦସ୍ୟୁ ମରିବା ଫଳରେ ବାକିମାନଙ୍କ ଭିତରେ ଯେ ଆତଙ୍କ ଖେଳିଯାଇଥାଏ, ସେଥିରେ ସନ୍ଦେହ ନଥିଲା । ଦସ୍ୟୁମାନଙ୍କର ସେହି ମାନସିକ ଅବସ୍ଥାର






କାନରେ କହିଲେ, "ମହାରାଜ, ଏମାନଙ୍କ ଭିତରେ ଅଧିକାଂଶ ହେଉଛନ୍ତି ନାଗବର୍ମାର ଅନୁଚର ।"

ଚନ୍ଦ୍ରସେନ କଥା ନ ଲୁଚାଇ ଡାକୁମାନଙ୍କୁ କହିଲେ, "ଶୁଣ, ତୁମେମାନେ ଦୁଷ୍ଟ ନାଗବର୍ମାର ଅନୁଚର । ଏକଥା ଅସ୍ୱୀକାର କରି ଲାଭ ନାହିଁ । କୁହ, ସେ ଦୁଷ୍ଟ କେଉଁଠାରେ ଆତ୍ମଗୋପନ କରି ରହିଛି ?"

ରାଜାଙ୍କ ପ୍ରଶ୍ନ ସହ ଅମରପାଳ ଯୋଡ଼ି ଦେଲେ, "ଯଦି ତୁମେମାନେ ସେକଥା ନ କହିବ, ତେବେ ସମସ୍ତଙ୍କ ମୁଣ୍ଡ କାଟି ହେବ ।"

ସୁଯୋଗ ନେଇ ଚନ୍ଦ୍ରସେନ ଘୋଷଣା କଲେ ଯେ ଯେଉଁମାନେ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ଆସି ତାଙ୍କ ପାଖରେ ଆତ୍ମସମର୍ପଣ କରିବେ, ସେମାନଙ୍କୁ କ୍ଷମା କରାଯିବ ଏବଂ ଜମିଜମା ଦେଇ ଥଇଥାନ ବ୍ୟବସ୍ଥା କରାଯିବ । ଯେଉଁମାନେ ତାହା ନ କରିବେ, ସେମାନଙ୍କୁ ସୈନ୍ୟମାନେ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଖୋଜି ବାହାର କରିବେ ଓ ନିଃଶେଷ କରିଦେବେ ।

ଏ ଘୋଷଣାର ସୁଫଳ ହେଲା । ନିର୍ଦ୍ଦିଷ୍ଟ ଦିନ ପଚିଶ ସରିକି ଡାକୁ ଆସି ଆତ୍ମସମର୍ପଣ କଲେ । ସେନାପତି ଅମରପାଳ ସେମାନଙ୍କୁ ଭଲ ଭାବରେ ଲକ୍ଷ୍ୟ କରି ରାଜା ଚନ୍ଦ୍ରସେନଙ୍କ

ଡାକୁମାନଙ୍କ ମୁଖପାତ୍ର ଯଶବୀର କହିଲା, "ସେନାପତି ମହାଶୟ ! ଆମେମାନେ ବର୍ତ୍ତମାନ ଆପଣଙ୍କ ଆୟତ୍ତରେ ରହିଛୁଁ । ଆପଣ ଯାହା ଇଚ୍ଛା ତାହା କରିପାରିବେ, ଏକଥା ଠିକ୍ । କିନ୍ତୁ ଆମ୍ଭେମାନେ ଏଠାକୁ ଆସିଛୁଁ କାହିଁକି ? ମହାରାଜାଙ୍କ ଘୋଷଣାରେ ବିଶ୍ୱାସ କରି ତ ? ଆମ ପ୍ରତି କୌଣସି ଭିନ୍ନ ବ୍ୟବହାର କରିବା ଉଚିତ ହେବ କି ? ଆମେ ଦିନେ ନାଗବର୍ମାର ସୈନ୍ୟବାହିନୀରେ ଥିଲୁଁ ଏକଥା ଠିକ୍ । କିନ୍ତୁ ନାଗବର୍ମା କେଉଁଠି, ସେକଥା ଆମେ କିଛି ଜାଣୁନା । ନାଗବର୍ମା ହଠାତ୍ ନିରୁଦ୍ଦିଷ୍ଟ ହୋଇଯିବା ଫଳରେ ଆମେମାନେ ଜୀବିକା ଅର୍ଜନର କୌଣସି ବାଟ ନପାଇ ଚୋରି ଡକାଏତି କରୁଥିଲୁଁ । ଚୋରି

ତକାଏତ ପ୍ରତି ଆମ୍ଭର ଆକର୍ଷଣ ଥିଲେ ଆମଣଙ୍କ ଘୋଷଣା ସ୍ୱୀକାର କରି ଶାନ୍ତିପୂର୍ଣ୍ଣ ଜୀବନ ଯାପନ ଉଦ୍ଦେଶ୍ୟରେ କାହିଁକି ଆସିଥାନ୍ତୁ ?"

"ସେସବୁ ଯୁକ୍ତି ବାଢ଼ି ଲାଭ ନାହିଁ । ତମମାନଙ୍କୁ ଇମିଜମା ଦେଇ ଥଇଥାନ କରିଦେବା ପରେ ବି ଯେ ତମେମାନେ ଚୋରି ତକାଏତି ଛାଡ଼ିଦେବ, ଏକଥା କେହି କହି-ପାରିବେ ନାହିଁ । ବରଂ ଥଇଥାନ ହେବା ପରେ ଦୁଷ୍ଟ ନାଗବର୍ମା ସହ ଗୋପନ ଯୋଗସୂତ୍ର ରକ୍ଷା କରିବା ତମମାନଙ୍କ ପକ୍ଷରେ ସହଜ ହେବ । ତମେମାନେ ନାଗବର୍ମା କେଉଁଠି ଅଛି କୁହ, ନହେଲେ ନିସ୍ତାର ନାହିଁ । ଜଣ ଜଣ କରି ମରିବ ।" ଅମରପାଳ କହିଲେ ।

"ତେବେ କ'ଣ ଆମକୁ ଅନେକ ଛଳନା କରି ଏଠାକୁ ଆଣିଲେ ?" ଯଶୱୀର ଏହା ପଚାରିଲା ।

"ଯେଉଁମାନେ ହତ୍ୟାକାରୀ, ଦସ୍ୟୁ, ସେମାନଙ୍କୁ ଛଳେ ବଳେ କଉଶଳେ ଧରିବାରେ କୌଣସି ଅନ୍ୟାୟ ନାହିଁ ।" ଅମରପାଳ କହିଲେ ।

ହଠାତ୍ ସବୁ ଦସ୍ୟୁମାନେ ସେମାନଙ୍କ ହାତମୁଠା ଖୋଲିଦେଲେ । ପ୍ରତ୍ୟେକଙ୍କ ପାପୁଲିରେ ଗୋଟାଏ ଲେଖାଏଁ କଳା ବଟିକା ଥିଲା ।




"ଏହା କ'ଣ ଜାଣନ୍ତି ?" ଯଶୱୀର ପଚାରିଲା ।

ଚନ୍ଦ୍ରସେନ ଓ ଅମରପାଳ ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ ।

ଯଶୱୀର ପୁଣି କହିଲା, "ଆମେ ହୁଏତ ଶାନ୍ତିଶିଷ୍ଟ ଜୀବନଯାପନ କରିବୁ, ନଚେତ୍ ମରିବୁ, ଏହି ସିଦ୍ଧାନ୍ତ ନେଇ ଆମେ ଏଠାକୁ ଆସିଛୁ । ଏସବୁ ହେଲା ଉଗ୍ର ବିଷ । ବର୍ତ୍ତମାନ ଆମେ ଜାଣୁଛୁ ଯେ ଆମକୁ ଶାନ୍ତିଶିଷ୍ଟ ଭାବରେ ବଞ୍ଚିବାକୁ ଦେବା ଆପଣଙ୍କ ଉଦ୍ଦେଶ୍ୟ ନୁହେଁ । ଅତଏବ ଆମ୍ଭେମାନେ ଏହି ବିଷ ଭକ୍ଷଣ କରି ଜୀବନ ହାରିବୁ ।"



ଚନ୍ଦ୍ରସେନ କହିଲେ, "ନା, ନା, ସେପରି କିଛି କରିବାର ଆବଶ୍ୟକତା ନାହିଁ। ଆମେ ତମ କଥାରେ ବିଶ୍ୱାସ କରୁଛୁଁ। ତେବେ ଯଦି ନାଗବର୍ମାର ସନ୍ଧାନ ପାଅ, ଆମର ପ୍ରଜା ହିସାବରେ ଆମକୁ ତାହା ବିଷୟରେ ଜଣାଇବା ତମର କର୍ତ୍ତବ୍ୟ।" ଏହା ପରେ ଚନ୍ଦ୍ରସେନ ସେମାନଙ୍କ ଜମିଜମା ଯୋଗାଇ ଦେବାର ବ୍ୟବସ୍ଥା କଲେ।

ଏହାର କିଛିଦିନ ପରେ ଚନ୍ଦ୍ରସେନଙ୍କର ପୁତ୍ର ସନ୍ତାନଟିଏ ଲାଭ ହେଲା। ରାଜ୍ୟ ବ୍ୟାପି ଉତ୍ସବ ଲାଗିଗଲା। କେଇଦିନ ଭିତରେ ରାକ୍ଷସ ଉଗ୍ରାକ୍ଷ ଆସି ପହଞ୍ଚିଗଲା ଓ ଆନନ୍ଦରେ ନାଚିଗଲା।

"ମହାରାଜ! ପାଞ୍ଚବର୍ଷ କିପରି କଟିବ ଓ ମୁଁ ଏହାକୁ ନେଇଯିବି, ସେହି ଉତ୍କଣ୍ଠାରେ ମୋତେ ଆଜିଠାରୁ ନିଦ ହେବ ନାହିଁ।" ଏହା କହି ସେ ବିଦାୟ ନେଲା। ରାଜା ଚନ୍ଦ୍ରସେନ ବା କହିବେ କ'ଣ? କଥା ତ ଦେଇଛନ୍ତି!

ରାଜ୍ୟରେ ପ୍ରଜାମାନେ ରାଜପୁତ୍ରଙ୍କ ଜନ୍ମ ଉପଲକ୍ଷେ ଯିନା ଉତ୍ସବ ପାଳନ କରୁଥାନ୍ତି; ରାଜା ଚନ୍ଦ୍ରସେନଙ୍କ ମନରେ ସୁଖ ନଥାଏ। ରାକ୍ଷସର ଉଦ୍ଦେଶ୍ୟ କ'ଣ? ସେ କାହିଁକି ଏପରି ଜିଗର କରୁଛି? ପାଞ୍ଚବର୍ଷ ପରେ ସେ କିପରି ନିଜ ପୁଅକୁ ରାକ୍ଷସକୁ ସମର୍ପଣ କରିଦେବେ? ଯଦି ସେ ରାକ୍ଷସକୁ ଦେଇଥିବା ନିଜ ବାକ୍ୟ ନ ରଖନ୍ତି, ତେବେ ରାକ୍ଷସ କ'ଣ କରିପାରେ?

ଗୁହୁଁ ଗୁହୁଁ ପ୍ରାୟ ପାଞ୍ଚବର୍ଷ ହୋଇଗଲା। ହଠାତ୍ ଦିନେ କେତେଜଣ ସୈନିକ ଆସି ଖବର ଦେଲେ କି ରାଜ୍ୟର ଗୋଟିଏ ପ୍ରାନ୍ତରେ ଲୋକେ ରାତିରେ ଆକାଶରେ କୌଣସି ଆଗ୍ନେୟ ପଦାର୍ଥ ଉଡିବାର ଦେଖିଛନ୍ତି। ଚନ୍ଦ୍ରସେନ ଚମକି ପଡ଼ିଲେ। ପୁଣି ଅଗ୍ନି ପକ୍ଷୀମାନେ ଆସି ତାଙ୍କ ରାଜ୍ୟରେ ଉତ୍ପାତ କରିବେ ନାହିଁ ତ?

ତେବେ ଏ ବିଷୟରେ ଚନ୍ଦ୍ରସେନ ଅଧିକ ଚିନ୍ତା କରିବା ପୂର୍ବରୁହିଁ ଦିନେ ସକାଳେ ଆସି ଉଗ୍ରାକ୍ଷ ହାଜର ହେଲା। "କାହିଁ ରାଜକୁମାର?

ବିଳମ୍ବ କରନାହିଁ । ମୁଁ ବର୍ତ୍ତମାନ ତାକୁ ନେଇଯିବି ।" ସେ କହିଲା ।

ଶତସେନ ସେପାଇଁ ସତେ ଅବା ପ୍ରସ୍ତୁତ ଥିଲେ । ସେ କହିଲେ, "ରାକ୍ଷସରାଜ ! ଧୈର୍ଯ୍ୟ ଧର । ଆଜି ପାଞ୍ଚବର୍ଷ ପୂରିଥିବା କଥା ମୁଁ ଜାଣେ । ରାଜକୁମାରଙ୍କୁ ବେଶ କରା ହେଉଛି ।"

ଏହାର କିଛି ସମୟ ପରେ ଦାସୀମାନେ ରାଜକୁମାରଙ୍କୁ ଆଣି ପହଞ୍ଚିଲେ । ରାକ୍ଷସ ଉଗ୍ରାକ୍ଷ ଆନନ୍ଦରେ ଶିଶୁକୁ ଉଠାଇ କାନ୍ଧରେ ବସାଇ ବାହାରିଗଲା ।

ସେ ବଣ ଦେଇ ଯାଉଥାଏ, ଶିଶୁ କହିଲା, "ଟିକିଏ ରୁହ । ମୁଁ ସେ ଶୁଖିଲା ଡାଙ୍ଗଟି ଉଠାଇ ନିଏଁ ।"

ରାକ୍ଷସ ଶିଶୁକୁ ତଳକୁ ଓହ୍ଲାଇ ଦେଲା । ସେ ଦୌଡିଯାଇ ଶୁଖିଲା କାଠି ଖଣ୍ଡିଏ ଉଠାଇଲା ।

"ବାପା, ଏହା କି କାମରେ ଲାଗିବ ?" ରାକ୍ଷସ ପଚାରିଲା ।

"ରୋଷେଇ ଘରେ ବିଲେଇ ପଶିଲେ ତାକୁ ତଡ଼ିବ !" ଶିଶୁ କହିଲା ।

ରାକ୍ଷସ ଆଶ୍ଚର୍ଯ୍ୟ ହୋଇ ତାକୁ ଅନାଇଲା । ଇଏ କ'ଣ ରାଜପୁତ୍ର ? ପାଞ୍ଚବର୍ଷର ରାଜପୁତ୍ର ରୋଷେଇ ଘରେ ପଶିବ କାହିଁକି ?

ସେ କଟମଟ କରି ଅନାଇ ପଚାରିଲା, "ତୁ ରୋଷେଇ ଘର ଦେଖିଛୁ ?"

"କାହିଁକି ? ବାପା ରୋଷେଇ କଲାବେଳେ ମୁଁ ତ ସବୁବେଳେ ସେଇଠି ଥାଏ !" ଶିଶୁ କହିଲା ।

"ଓଃ !" ଉତ୍ତେଜିତ ସ୍ୱରରେ ରାକ୍ଷସ ଚିତ୍କାର କଲା । "ମୋତେ ସୂପକାରର ପୁଅକୁ ଧରାଇ ଦେଇ ରାଜପୁତ୍ର ବୋଲି ଲୁହାଯାଇଛି ପରା !"

ଏହା ପରେ ସେ ଶିଶୁକୁ ପୁଣି କାନ୍ଧରେ ବସାଇ କପିଳ ଦୁର୍ଗ ଆଡ଼େ କ୍ଷିପ୍ର ଗତିରେ ଚାଲିଲା ।

(କ୍ରମଶଃ)






# ଜୟ ପରାଜୟ

ନିଶା ଗରଜୁଥାଏ । ତୁହାକୁ ତୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

ରାଜା ବିକ୍ରମାର୍କ କିନ୍ତୁ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା ! ତମେ କୌଣସି ବିଷୟରେ ଜୟଲାଭ କରିବା ନିମନ୍ତେ ଏ ଦୁଃସାହସିକ କାମ ହାତକୁ ନେଇଛ ନିଶ୍ଚୟ । କିନ୍ତୁ ଥରେ ଥରେ ମଣିଷ

## ବେତାଳ କଥା



ଜୟ ପ୍ରାପ୍ତିର ଦ୍ୱାର ଦେଶରେ ଠିଆ ହୋଇ ପରାଜୟ ବରଣ କରିନେବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ। ଆଶା କରେଁ ତମେ ଏ ବିଷୟରେ ସଚେତନ। ତମକୁ ଗୋଟାଏ ଦୃଷ୍ଟାନ୍ତ ଦେଉଛି, ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ ଗପିଲା: ଉଜ୍ଜ୍ୱଳପୁର ରାଜ୍ୟ ଉପରେ ରାଜୁତି କରୁଥିଲେ ଶୁଭଶଙ୍କର। ତାଙ୍କର ପୁଅ ନଥିଲେ, ଥିଲେ ଗୋଟିଏ ବୋଲି କନ୍ୟା—ଶୁଭମତି।

ରାଜକୁମାରୀ ଶୁଭମତି ଥିଲେ ବିଚକ୍ଷଣ କନ୍ୟା। ସେ ପିତାଙ୍କୁ ରାଜକାର୍ଯ୍ୟରେ ମନ୍ତ୍ରୀ-ମାନଙ୍କଠୁଁ ବଳି ଅଧିକ ସହାୟତା କରୁଥିଲେ। ପୁଅ ନଥିବା ହେତୁ ରାଜାଙ୍କ ମନରେ କୌଣସି ଦୁଃଖ ନଥିଲା। କାରଣ ଶୁଭମତିଙ୍କ ଭଳି କନ୍ୟା ପୁତ୍ରଠୁଁ କୌଣସି ଗୁଣରେ ଊଣା ନୁହେଁ।

ସବୁ ଠିକ୍‌ଠାକ୍ ଚାଲିଥିଲା। ହଠାତ୍ ରାଜା ଦିନେ ଗୋଟିଏ ବଣ ମୂଲକରେ ବୁଲୁଥିବା ବେଳେ ତାଙ୍କୁ ଅଜଣା କୀଟଟିଏ ଦଂଶନ କଲା। ପ୍ରଥମେ ସେ ଏହା ଉପରେ ଗୁରୁତ୍ୱ ଦେଲେ ନାହିଁ। କିନ୍ତୁ ଦେଖାଗଲା ସେ କୀଟର ବିଷ ତାଙ୍କୁ ନିସ୍ତେଜ କରି ଦେଉଛି। ତାଙ୍କର କ୍ଷୁଧା ତୃଷ୍ଣା ରହିଲା ନାହିଁ। ସେ ଅର୍ଦ୍ଧଚେତନ ଅବସ୍ଥାରେ ରହିଲେ।

ବଡ଼ ବଡ଼ ଚିକିତ୍ସକମାନେ ତାଙ୍କୁ ନିରାମୟ କରିପାରିଲେ ନାହିଁ। ରାଜକୁମାରୀ ମନ୍ତ୍ରୀଙ୍କ ସହ ପରାମର୍ଶ କରି ଘୋଷଣା କଲେ କି ଯିଏ ରାଜାଙ୍କ ରୋଗ ଭଲ କରିଦେବ, ସେ ବିପୁଳ ଅର୍ଥ ଲାଭ କରିବ, ନହେଲେ ଅର୍ଥ ବଦଳରେ ଇଚ୍ଛା କଲେ ରାଜ୍ୟର ଏକ ତୃତୀୟାଂଶ ପାଇବ।

ରାଜଧାନୀଠାରୁ ବହୁ ଦୂରବର୍ତ୍ତୀ ଗୋଟିଏ ଗାଁରେ ସୁନନ୍ଦ ନାମକ ଯୁବକ ଥାଏ। ସେ ଅତ୍ୟନ୍ତ ଗରିବ। ଗାଁର ଗୋଟିଏ ସୁନ୍ଦରୀ କନ୍ୟାକୁ ସେ ବିଭା ହେବାକୁ ମନ କରୁଥିଲା। କିନ୍ତୁ ସେ ଗରିବ ବୋଲି କନ୍ୟାପିତା ତା' ପ୍ରସ୍ତାବ ଗ୍ରହଣ କଲେ ନାହିଁ। ଦୁଃଖରେ ସେ ଆତ୍ମହତ୍ୟା କରିବାକୁ ସ୍ଥିର କଲା ଓ ଗୋଟିଏ ପର୍ବତ ଶିଖରକୁ ଉଠିଗଲା।



ହଠାତ୍ ସେ ପଛରୁ ଶୁଣିଲା ଅଟ୍ଟହାସ୍ୟ । ଅନାଇ ଦେଖିଲା, ଗୋଟିଏ ରାକ୍ଷସ ତା' ଆଡ଼କୁ ଆଗେଇ ଆସୁଛି । ସେ ଠିଆ ହୋଇ ରହିଲା । ରାକ୍ଷସ ହସ ବନ୍ଦ କରି ପାଖକୁ ଆସି କହିଲା, "ସାବାସ୍ ! ରାକ୍ଷସକୁ ଦେଖି, ମୃତ୍ୟୁ ଆସନ୍ନ ଜାଣି ବି ଦମ୍ଭ ଧରି ଠିଆ ହୋଇଥିବା ଏଭଳି ସାହସୀ ଯୁବକ ମୁଁ ଦେଖି ନଥିଲି ! ଜଣେ ସାହସୀ ଯୁବକକୁ ମୁଁ ଖାଇବି ନାହିଁ ।"

"ରାକ୍ଷସ ବୀର ! ତମେ ମୋତେ ଖାଇପାର । ମୁଁ ଏ ଶିଖରରୁ ଡେଇଁପଡ଼ି ଆତ୍ମହତ୍ୟା କରିବାକୁ ମନ କରୁଥିଲି । ତମେ ଖାଇଗଲେ ବି ଏକା କଥା ହେବ ।" ସୁନନ୍ଦ କହିଲା ।

"ଓଃ, ତମେ ତେବେ ସାହସୀ ନୁହେଁ, ତା'ର ବିପରୀତ, ଭୀରୁ ! ଆତ୍ମହତ୍ୟା ଭୀରୁ-ମାନେହିଁ କରନ୍ତି । ନାଃ, ଏଭଳି ନିପଟ ଭୀରୁକୁ ଖାଇବାକୁ ବି ମୋର ରୁଚି ହେଉ ନାହିଁ ।" ରାକ୍ଷସ କହିଲା ।

"ରାକ୍ଷସବୀର ! ଯଦି ମୋତେ ନ ଖାଇବ, ତେବେ ଅନ୍ତତଃ ମୋର ବଞ୍ଚିରହିବା ଦିଗରେ ମୋତେ ସାହାଯ୍ୟ କର !" ଏହା କହି ସୁନନ୍ଦ ନିଜ ଦାରିଦ୍ର୍ୟ ବର୍ଣ୍ଣନା କଲା ।

ରାକ୍ଷସ କହିଲା, "ବେଶ୍ । ତମେ ଗୋଟାଏ କାମ କର । ରାଜା ଅସୁସ୍ଥ । ଯିଏ ତାଙ୍କୁ ଆରୋଗ୍ୟ କରିବ, ସିଏ ପ୍ରଚୁର ଅର୍ଥ ପାଇବ ନଚେତ୍ ରାଜ୍ୟରୁ ଅଂଶ ପାଇବ । ରାଜାଙ୍କୁ କେଉଁ କୀଟ କାମୁଡ଼ିଥିଲା, ତାହା ମୁଁ ଜାଣେ । ତଳେ ଏଇ ଯେଉଁ ଗୁଳ୍ମ ଦେଖୁଛ, ସେହି ହେଲା ତା'ର ଔଷଧ । ମେଞ୍ଚାଏ ପତ୍ର ଧରି ଯାଅ । ଦୁଇ ଚାରିଦିନ କଚୁ କଚୁ ବାଟି ତା' ରସ ପିଆଇବ । ରାଜା ଭଲ ହୋଇଯିବେ । ତମେ ରାଜ୍ୟ ନେବା ଠିକ୍ ହେବ ନାହିଁ । ପ୍ରଚୁର ଅର୍ଥ ନେଇ ସୁଖରେ ରହିବ ।"

ସୁନନ୍ଦ ରାକ୍ଷସକୁ ଧନ୍ୟବାଦ ଦେଇ କିଛି ଗୁଳ୍ମ ପତ୍ର ସଂଗ୍ରହ କରି ରାଜଧାନୀ ଆଡ଼େ ଚାଲିଲା ।

ରାଜାଙ୍କ ନଅରରେ ପହଞ୍ଚି ସୁନନ୍ଦ ମନ୍ତ୍ରୀଙ୍କ ସାକ୍ଷାତ୍ କଲା ଓ ରାଜାଙ୍କ ଚିକିତ୍ସା କରିବ ବୋଲି କହିଲା । ମନ୍ତ୍ରୀ ତାକୁ ପଚାରିଲେ, ତମେ କେତେ ଦିନରୁ ଚିକିତ୍ସା ବିଜ୍ଞାନରେ ହାତ ଦେଲଣି ? ତମ ଗୁରୁ କିଏ ? ତମେ



ପୂର୍ବରୁ କାହାକୁ ଏଭଳି ରୋଗରୁ ଆରୋଗ୍ୟ କରିଛ କି ?"

ସୁନନ୍ଦ ନାହିଁ କଲା । ମନ୍ତ୍ରୀ ହସିଲେ ଓ କହିଲେ, "ବାବୁ, ରାଜ୍ୟର ଅଂଶ ଅଥବା ପ୍ରଚୁର ଅର୍ଥ ପୁରସ୍କାର ଦେବାର ଘୋଷଣା ଅନେକଙ୍କ ମୁଣ୍ଡ ବିଗିଡ଼ାଇ ଦେବ, ସନ୍ଦେହ ନାହିଁ ।"

ସୁନନ୍ଦ କହିଲା, "ମହାଶୟ, ଘୋଷଣା ଯେତେବେଳେ କରିଛନ୍ତି, ପ୍ରଥମରୁହିଁ ନିଜ ଘୋଷଣା-ବିରୋଧୀ କାମ କରନ୍ତୁ ନାହିଁ । ମୋତେ ସୁଯୋଗ ଦିଅନ୍ତୁ । ମୁଁ ଅକୃତକାର୍ଯ୍ୟ ହେଲେ ବରଂ ନିଜ ଘୋଷଣା ପ୍ରତ୍ୟାହାର କରିନେବେ ।" ମନ୍ତ୍ରୀ ରାଜି ହେଲେ ।

ଆରମ୍ଭ ହେଲା ସୁନନ୍ଦ ଦ୍ୱାରା ରାଜାଙ୍କ ଚିକିତ୍ସା । ରାଜକୁମାରୀ ନିଜେ ତା' ବରାଦ ମୁତାବକ କାମ କରୁଥାନ୍ତି । ପ୍ରଥମ ଦିନ ରାଜା ସେ ରସ ପିଇ ସତେଜ ଦେଖାଗଲେ । ଦ୍ୱିତୀୟ ଦିନ ସେ ସ୍ୱାଭାବିକ କଥାବାର୍ତ୍ତା କଲେ । ତୃତୀୟ ଦିନ ତାଙ୍କ କ୍ଷୁଧା ତୃଷ୍ଣା ଫେରି ଆସିଲା । ଚତୁର୍ଥ ଦିନ ସେ ଚାଲବୁଲ କଲେ ଓ ପଞ୍ଚମ ଦିନ ସ୍ନାନାଦି ଶେଷ କରି ଦରବାରକୁ ବି ଗଲେ ।

ଦରବାରରେ ସୁନନ୍ଦକୁ ବିପୁଳ ସମ୍ବର୍ଦ୍ଧନା ଦିଆଗଲା । ରାଜା ପଚାରିଲେ, "ତମେ ରାଜ୍ୟର ଏକାଂଶ ଚାହଁ, ନା ବିପୁଳ ଅର୍ଥ ଚାହଁ ?"

ସୁନନ୍ଦ କହିଲା, "ମହାରାଜ! ଆପଣ ମୋତେ କିଛିଦିନ ସମୟ ଦିଅନ୍ତୁ ।" ରାଜା ସେଥିରେ ସମ୍ମତ ହେଲେ ।

ରାଜା ଓ ରାଜକନ୍ୟାଙ୍କଠୁଁ ବିଦାୟ ନେଇ ସୁନନ୍ଦ ଜଣେ ଅବସରପ୍ରାପ୍ତ ସେନାପତିଙ୍କ ପାଖକୁ ଗଲା । ତାଙ୍କଠାରେ ଛଅମାସ ରହି ନାନା ଯୁଦ୍ଧବିଦ୍ୟା ଶିଖିଲା । ତା'ପରେ ଜଣେ କୁସ୍ତି ବିଶାରଦଠାରୁ କୁସ୍ତି ବିଦ୍ୟାର ନାନା କୌଶଳ ଶିଖିଲା । ତା'ପରେ ଜଣେ ପଣ୍ଡିତଙ୍କଠାରେ କିଛି ଶାସ୍ତ୍ର ବି ଅଧ୍ୟୟନ କଲା ।

ଏହା ପରେ ସେ ଭିନ୍ନ ନାମରେ ଆସି ନଅରରେ ହେଉଥିବା ବାର୍ଷିକ କୁସ୍ତି ଓ ଅସ୍ତ୍ରଚାଳନା ପ୍ରତିଯୋଗିତାରେ ଭାଗ ନେଇ

ଓ ସଫଳ ହେଲା । ରାଜା ଯେତେବେଳେ ଜାଣିଲେ ଯେ ସେ ସୁନନ୍ଦ, ସେତେବେଳେ ସେ ବହୁତ ଖୁସି ହେଲେ ।

"ରାଜ୍ୟର ଅଂଶ ନେବ ନା ଅର୍ଥ ନେବ, ସେ ବିଷୟରେ କିଛି ସିଦ୍ଧାନ୍ତ କଲଣି ?" ରାଜା ପଚାରିଲେ ।

"ମହାରାଜ, ରାଜ୍ୟର ଅଂଶ ସମେତ ମୋତେ ଆଉ ଏକ ଉପହାର ଦିଅନ୍ତୁ ।" ସେ କହିଲା ।

"କି ଉପହାର ?"

"ରାଜକୁମାରୀଙ୍କ ସହ ମୋର ବିବାହ ହେଉ ।" ସୁନନ୍ଦ କହିଲା ।

ରାଜା ଗମ୍ଭୀର ଭାବରେ କହିଲେ, "ସୁନନ୍ଦ! ଏ ବିଷୟରେ ରାଜକୁମାରୀଙ୍କ ସିଦ୍ଧାନ୍ତହିଁ ଚୂଡ଼ାନ୍ତ ହୋଇପାରେ । ତମେ ତାଙ୍କ ସହ ସାକ୍ଷାତ କର ।"

ରାଜା ସୁନନ୍ଦ ସହ ରାଜକୁମାରୀଙ୍କ ସାକ୍ଷାତର ବ୍ୟବସ୍ଥା କରିଦେଲେ । ରାଜକୁମାରୀ ବେଶ୍ କିଛି ସମୟ ପର୍ଯ୍ୟନ୍ତ ସୁନନ୍ଦ ସହ କଥାବାର୍ତ୍ତା କଲେ ଓ ତା'ପରେ ଦୃଢ଼ କଣ୍ଠରେ ପଚାରିଲେ, "ସୁନନ୍ଦ! ସୂର୍ଯ୍ୟ ଓ ଚନ୍ଦ୍ର, ଏ ଦୁଇ ଭିତରୁ କିଏ ବଡ଼ ?"

"ସୂର୍ଯ୍ୟ ନିଶ୍ଚୟ ବଡ଼ !" ସୁନନ୍ଦ ଆଶ୍ଚର୍ଯ୍ୟ ହୋଇ ଉତ୍ତର ଦେଲା ।

"ତୁମ୍ଭେ ତେବେ ନିଶ୍ଚୟ ସୂର୍ଯ୍ୟ ହେବାକୁ ପସନ୍ଦ କରିବ!" ରାଜକୁମାରୀ କହିଲେ ।




ସୁନନ୍ଦ ଚୁପ୍‌ଚାପ୍ ବସି ରହିଲା । ତା'ପରେ ସେ କହିଲା, "ଧନ୍ୟବାଦ ।" ସେଠାରୁ ଯାଇ ସେ ରାଜାଙ୍କୁ କହିଲା କି ତା'ର ରାଜ୍ୟ ଲୋଡ଼ା ନାହିଁ । ସେ ଅର୍ଥ ପାଇଲେ ଖୁସି ହେବ । ରାଜା ଆନନ୍ଦରେ ତାକୁ ବିପୁଳ ଅର୍ଥ ଦେଲେ । ସେ ଯାଇ ବ୍ୟବସାୟ କରି ଭଲରେ ରହିଲା । ଗାଁର ସେ କନ୍ୟାଟିକୁ ବିଭା ବି ହେଲା ।

ବେତାଳ ଏତିକି କହିସାରି ଟିକିଏ ଚୁପ୍ ରହି ତୀବ୍ର କଣ୍ଠରେ ପ୍ରଶ୍ନ କଲା: "ରାଜା! ରାଜକୁମାରୀଙ୍କ ପ୍ରଶ୍ନ ପ୍ରହେଳିକା ଭଳି ମନେ ହୁଏନା କି ? ସୁନନ୍ଦ ସେଥିରୁ କ'ଣ ବୁଝିଲା ଯେ ରାଜ୍ୟରୁ ଅଂଶ ପାଇ ରାଜା ହେବାର ସୁଯୋଗ ଛାଡି ଦେଲା ? ଜାଣିଲେ ମୋ ପ୍ରଶ୍ନର

ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଜଣେ କିଛି ଅସ୍ତ୍ର ଚାଳନା, କୁସ୍ତି ବିଦ୍ୟା ଶିଖିଗଲେ ଓ ଶାସ୍ତ୍ର ପଢ଼ି ପକାଇଲେ ଯେ ରାଜ୍ୟ ଶାସନ କରିପାରିବ, ତାହା ନୁହେଁ । ଆମେ ଭୁଲିଗଲେ ଚଳିବ ନାହିଁ ଯେ ସୁନନ୍ଦ ଥରେ ଆତ୍ମହତ୍ୟା କରିବାକୁ ବାହାରିଥିଲା । ଯାହାର ନିଜକୁ ଶାସନ କରିବାର ଶକ୍ତି ନାହିଁ, ସେ ରାଜ୍ୟ ଶାସନ କରିବ କ'ଣ ? ରାକ୍ଷସ ସେଥିପାଇଁ ତାକୁ କହିଦେଇଥିଲା କି ସେ ରାଜାଙ୍କୁ ଆରୋଗ୍ୟ କରିସାରି ପୁରସ୍କାର ହିସାବରେ ଅର୍ଥହିଁ ନେବା ଠିକ୍ ହେବ, ରାଜ୍ୟର ଅଂଶ ନୁହେଁ । ସୁନନ୍ଦ ଆଂଶିକ ରାଜ୍ୟର ରାଜା ହୋଇ ରାଜ୍ୟ ଶାସନ କରିପାରିବ ନାହିଁ ବୋଲି ଆଶଙ୍କା କରି ଅନ୍ୟ ଏକ ଯୋଜନା କରିଥିଲା । ରାଜକୁମାରୀଙ୍କୁ ବିଭା ହେଲେ ସେ ପୂରା ରାଜ୍ୟ ପାଇବ; ଅଥଚ ରାଜକୁମାରୀ ଶାସନ କାର୍ଯ୍ୟରେ ତା'ର ସହାୟତା କରିବେ । ବୁଦ୍ଧିମତୀ ରାଜକୁମାରୀ ତା' ସହ କଥାବାର୍ତ୍ତା କରି ଏସବୁ ବୁଝିପାରିଥିବେ । ତାଙ୍କ ପ୍ରଶ୍ନର ତାତ୍ପର୍ଯ୍ୟ ହେଲା, ସୂର୍ଯ୍ୟ ନିଜ ଆଲୋକରେ ଗରୀୟାନ୍ । ଚନ୍ଦ୍ର କିନ୍ତୁ ସୂର୍ଯ୍ୟଙ୍କଠୁଁ ଆଲୋକ ପାଇ ଉଜ୍ଜ୍ୱଳ ଦେଖାଯାଏ । ସୁନନ୍ଦ ଯଦି ଅର୍ଥ ନେଇ ନିଜେ ସ୍ୱାଧୀନ ଭାବରେ ବେପାର ବଣିଜ କରିବ, ତେବେ ସେ ହେବ ଗରୀୟାନ । ରାଜା ହୋଇ ରାଜକୁମାରୀଙ୍କ ପ୍ରଭାବ ଦ୍ୱାରା ଚାଳିତ ହେବା ଅର୍ଥ ଚନ୍ଦ୍ର ଭଳି ହେବା ।

ରାଜକୁମାରୀ ଏହା ଚେତାଇ ଦେଲେ ଓ ସୁନନ୍ଦ ବୁଝିଗଲା । ଏହାହିଁ ହେଲା ଦୁହିଁଙ୍କ କଥାବାର୍ତ୍ତାର ରହସ୍ୟ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଅପୂର୍ବ ଚନ୍ଦ

ଗୋଟାଏ ନପଟ ଗାଁରେ ଥାଏ ବାଂ ନାମକ ଯୁବକ । ଶହ ଶହ ବର୍ଷ ତଳେ ତା' ପୂର୍ବପୁରୁଷ ଯେମିତି ଯେତକ ଜିନିଷକୁ ନେଇ ଚଳୁଥିଲେ, ବାଂ ସମସ୍ତଙ୍କୁ ଓ ସେ ଗାଁ ଲୋକଙ୍କର ଆଉ ଅଧିକା କିଛି ଲୋଡ଼ା ନଥିଲା । ସେମାନେ କ୍ଷେତରେ କାମ କରୁଥାନ୍ତି, ସୁଖେ ଦୁଃଖେ ଚଳି ଯାଉଥାନ୍ତି । ସେମାନଙ୍କର କୌଣସି ଉଚ୍ଚାକାଂକ୍ଷା ନଥାଏ । ଆଖପାଖ ଦୁଇ ତିନିଖଣ୍ଡି ଗାଁ ଭିତରେ ସେମାନଙ୍କ ବନ୍ଧୁବାନ୍ଧବ ସୀମାବଦ୍ଧ ଥାନ୍ତି । ଗାଁଠାରୁ ସହର ଦିନକର ବାଟ । କୌଣସି ବିଶେଷ କାମରେ କେହି ସହରକୁ ଗଲେ ଚାଲିକରି ଯାଉଥାନ୍ତି । ଗାଡ଼ି ଘୋଡ଼ାର ବ୍ୟବହାର ସେମାନେ ଜାଣି ନଥିଲେ ।

ଦିନେ ବାଂର ସ୍ତ୍ରୀ ସୁଇଂ ଆଉ ଗୋଟାଏ ଗାଁକୁ ଯାଇଥିଲା । ସେ ଗାଁକୁ ଆସିଥିଲେ ଜଣେ ସହରି ଯୁବତୀ । ସେ ଯୁବତୀ ନିଜ କେଶରେ ଲଗାଇଥିଲେ ଗୋଟାଏ ବଙ୍କା ଚିରୁଣୀ । "ଏଇଟା ବର୍ତ୍ତମାନ ସହରର ନାରୀମହଲରେ ଚାଲୁ ହୋଇଛି ।" ସେ ଯୁବତୀ କହିଥିଲେ ।

ଦିନେ ବାଂ ସହରକୁ ଯିବା ଦରକାର ହେଲା । ଗାଁ ବାହାରେ ତାକୁ ବିଦାୟ ଦେବାବେଳେ ସୁଇଂ କହିଲା, "ସହରରୁ ମୋ ପାଇଁ ଗୋଟାଏ ବଙ୍କା ଚିରୁଣୀ ଆଣିବ—ଏଇ ଜହ୍ନ ଭଳି ।"

ସହରରେ କାମଦାମ ସରିବା ପରେ ବାଂର ସେକଥା ମନେ ପଡ଼ିଲା, ହେଲେ ସେ ଖାଲି 'ଜହ୍ନଭଳି' ବୋଲି ମନେ ପକାଇ ପାରିଲା । ତା'ଠୁଁ ଅଧିକା କିଛି ନୁହେଁ ।

"ଇମିତି ଜହ୍ନଭଳି କିଛି ଅଛି ?" ସେ ଗୋଟାଏ ବଡ଼ ଦୋକାନର ମାଲିକକୁ ପଚାରିଲା ।

ଚୀନ ଦେଶର ଲୋକକଥା

"ଜରୁର୍ ଅଛୁ ।" ଏହା କହି ଦୋକାନୀ ତାଙ୍କୁ ନୂଆ କରି ବାହାରିଥିବା ଦର୍ପଣଟିଏ ଧରାଇ ଦେଲା । ବାଂ ଖୁସି ହୋଇ ତାକୁ ଧରି ଗାଁକୁ ଫେରିଲା । "ଦେଖ ତମପାଇଁ କ'ଣ ଆଣିଛୁ ।" ଏହା କହି ସେ ଦର୍ପଣଟି ସୁଇଂକୁ ଦେଲା ।

"ଇଏ କ'ଣ ? ମୁଁ ଥାଉଁ ଥାଉଁ ତମେ ଆଉ ଗୋଟାଏ କନ୍ୟା ଆଣିଲ କାହିଁକି ?" ସୁଇଂ କାନ୍ଦ କାନ୍ଦ ହୋଇ ଉଚ୍ଚ କଣ୍ଠରେ ଏହା କହିଲା । ବାଂର ମା ଦୌଡ଼ି ଆସି ଦର୍ପଣଟି ନିଜ ହାତକୁ ନେଇ କହିଲା, "ଆରେ ପୁଅ, ତୋର ଆଉ ଗୋଟାଏ ମା କାହିଁକି ଲୋଡ଼ା ହେଲା ଯେ ଏ ବୁଢ଼ୀକୁ ନେଇ ଆସିଲୁ ?"

ସେମାନେ ପାଟି କରି ପଦାକୁ ବାହାରି ଆସିଲେ । ସେତିକିବେଳେ ଗାଁର ପ୍ରଧାନ ସେ ବାଟେ ଯାଉଥିଲେ । ସେମାନଙ୍କ କଳି ଶୁଣି ସେ ଆସି ଦର୍ପଣରେ ନିଜକୁ ଦେଖି ଚମକି ପଡ଼ିଲେ । "ମୁଁ ନଈ ପାଣିରେ ମୋ ମୁହଁ ଯେମିତି ଦେଖେଁ, ଏ ଲୋକ ସେମିତି । ଅର୍ଥାତ୍ ଇଏ ଜଣେ ଗାଁ ପ୍ରଧାନ । ମୋ ପଦ ଛଡ଼ାଇ ନେବାକୁ ଏଠାକୁ ଆସିଛି !" ସେ ପାଟି କରି ବାଂକୁ ଗାଳି ଦେଲେ ।

ଗାଁର ପୁରୋହିତ ସେ ବାଟେ ଯାଉଁ ଯାଉଁ ସେଠାକୁ ଆସି ଯାହା ବୁଝିଲେ, ସେଥିରୁ ତାଙ୍କର ଧାରଣା ହେଲା କି ବାଂ ଗୋଟାଏ ଯାଦୁ ଜିନିଷ ନେଇ ଆସିଛି । ସେ ଡରିଗଲେ । ଯଦି ବାଂ ଯାଦୁବିଦ୍ୟା ଦେଖାଇବ, ତେବେ ତାଙ୍କ ମନ୍ତ୍ରତନ୍ତ୍ରକୁ କିଏ ଖାତିର କରିବ ?

"ମୁଁ ଏ ସମସ୍ୟାର ସମାଧାନ କରିଦେବି !" କହି ପୁରୋହିତ ଦର୍ପଣଟି ନେଇ ପଥର ଉପରେ କଚାଡ଼ି ଦେଲେ । ତାହା ଭାଙ୍ଗି ଚୁର୍ମାର୍ ହୋଇଗଲା ।

"ସମାଧାନ ହୋଇଗଲାଟି ?" ପୁରୋହିତ ପଚାରିଲେ ।

ସମସ୍ତେ ଦେଖିଲେ, ବାସ୍ତବିକ ସମାଧାନ ହୋଇଯାଇଛି !



ଭାରତର ଇମାରତ

# ସାଞ୍ଚିର ବୌଦ୍ଧ ସ୍ତୂପ




ମଧ୍ୟପ୍ରଦେଶର ରାଜଧାନୀ ଭୋପାଳଠୁଁ କିଛି ଦୂରରେ ଅବସ୍ଥିତ ସାଞ୍ଚିର ବୌଦ୍ଧ ସ୍ତୂପ । ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ସମ୍ରାଟ ଅଶୋକଙ୍କ ନିର୍ଦ୍ଦେଶରେ ଏହା ନିର୍ମିତ ହୋଇଥିଲା ।



ଏହି ସ୍ତୂପ ନିକଟରେ ସେତେବେଳେ ଏକ ପ୍ରାଚୀନ ସହର ଥିଲା । ତା'ର ନାମ ବିଦିଶା । ଅଶୋକଙ୍କ ପୁତ୍ର ମହେନ୍ଦ୍ର ବୌଦ୍ଧଧର୍ମ ପ୍ରଚାର ନିମନ୍ତେ ସିଂହଳ ଯିବା ପୂର୍ବରୁ ଏଠାରେ ଧ୍ୟାନମଗ୍ନ ରହିଥିଲେ । ସେ ଧ୍ୟାନସ୍ଥ ଥିଲାବେଳେ ତାଙ୍କ ଜନନୀ (ବିଦିଶାର କନ୍ୟା) ତାଙ୍କ ନିରାପତ୍ତା ପାଇଁ ସର୍ବଦା ଦୃଷ୍ଟି ରଖିଥାନ୍ତି ।

ସେତେବେଳେ ଏଠାରେ ଛୋଟ ସ୍ତୂପଟିଏ ଥିଲା । ପରେ ପରେ ଏଠାକୁ ଆସିଲେ ସମ୍ରାଟ ଅଶୋକ । ଏ ସ୍ଥାନର ସୌନ୍ଦର୍ଯ୍ୟ ଓ ବିଜନତା ତାଙ୍କୁ ମୁଗ୍ଧ କଲା । ଏଠାରେ ଗୋଟିଏ ବିଶାଳ ବୌଦ୍ଧ ବିହାର ନିର୍ମାଣ ନିମନ୍ତେ ସେ ବ୍ୟବସ୍ଥା କଲେ ।





ବିଦିଶାର ଶିଳ୍ପୀମାନଙ୍କୁହିଁ ସ୍ତୂପ ଓ ଅନ୍ୟାନ୍ୟ ଘର ନିର୍ମାଣ କରିବାର ଦାୟିତ୍ୱ ଦିଆଗଲା । ସେଥିପାଇଁ ସେମାନଙ୍କୁ ବୌଦ୍ଧଶାସ୍ତ୍ର ଓ କାହାଣୀ-ମାନ ଅଧ୍ୟୟନ କରିବାକୁ ହେଲା । ବୁଦ୍ଧଙ୍କ ଜୀବନୀ ଓ ଶିକ୍ଷା ଅପୂର୍ବ ଶିଳ୍ପମାନଙ୍କ ମାଧ୍ୟମରେ ଏଠାରେ ଫୁଟାଇବା ସମ୍ଭବପର ହୋଇଛି ।

କ୍ରମେ ଏହା ବୌଦ୍ଧ ଭିକ୍ଷୁ ତଥା ଗବେଷକ ମାନଙ୍କ ସକାଶେ ଏକ ବିଶେଷ ଉପଯୁକ୍ତ ସ୍ଥାନ ରୂପେ ଖ୍ୟାତି ଲାଭ କଲା । ଭାରତର ଚତୁର୍ଦ୍ଦିଗରୁ ତଥା ବିଦେଶରୁ ଜିଜ୍ଞାସୁମାନେ ଆସି ଏଠାରେ ଧ୍ୟାନ ଓ ଅଧ୍ୟୟନ କଲେ ।






କେତେ ଶତାବ୍ଦୀ ପରେ କୌଣସି ଅଜ୍ଞାତ କାରଣରୁ ଭିକ୍ଷୁ ଓ ଗବେଷକମାନେ କ୍ରମେ ଏ ସ୍ଥାନ ତ୍ୟାଗ କରି ଚାଲିଗଲେ । ଏ ସ୍ଥାନର ଚତୁର୍ଦ୍ଦିଗରେ କ୍ରମେ ବଣବୁଦା ବଢ଼ିବାକୁ ଲାଗିଲା । ସେ ସମଗ୍ର ଅଞ୍ଚଳ ଅରଣ୍ୟରେ ପରିଣତ ହେଲା ଓ ଜୀବଜନ୍ତୁଙ୍କ ଆବାସ ହେଲା ।

୧୮୧୮ ରେ ଗୋଟିଏ ସୈନ୍ୟଦଳ ଏ ବାଟରେ ଯାଉଥିବା ବେଳେ ଜଣେ ବ୍ରିଟିଶ୍ ସେନାପତି ଟେଲର୍ ଏ ଲୁକ୍କାୟିତ ସ୍ତୁପର ସନ୍ଧାନ ପାଇଲେ ଓ ବଣବୁଦା ସଫା କରି ଏହାକୁ ଆବିଷ୍କାର କଲେ । ତାଙ୍କ ବିସ୍ମୟ ଓ ଆନନ୍ଦର ସୀମା ରହିଲା ନାହିଁ ।






ବହୁ ଶତାବ୍ଦୀ ଧରି ବିସ୍ମୃତ ହୋଇ ରହିଥିବା ଏ ବରିଷ୍ଠ ବୌଦ୍ଧ ବିହାରର ଏକ ପରେ ଏକ ବିଭବ ଲୋକ ଲୋଚନକୁ ଆସିଲା। ମୁଖ୍ୟ ସ୍ତୂପଠୁଁ ଦଶ କିଲୋମିଟର ଦୂରବର୍ତ୍ତୀ ଏକ ସ୍ତୂପରୁ ବୁଦ୍ଧଙ୍କ ଶିଷ୍ୟ ସାରିପୁତ୍ର ଓ ମୌଗଲ୍ଲାୟନଙ୍କ ଦେହାବଶେଷ ମଧ୍ୟ ମିଳିଲା।

ସ୍ତୂପର ଚତୁର୍ଦ୍ଦିଗରେ ଚାରିଗୋଟି ପ୍ରସ୍ତର ତୋରଣ ରହିଛି। ଦୁଇ ହଜାର ବର୍ଷ ତଳର ଏ ତୋରଣମାନ ଅପୂର୍ବ ଶିଳ୍ପ କଳାରେ ସମୃଦ୍ଧ। ସଙ୍କେତ ଦ୍ୱାରା ବୁଦ୍ଧଙ୍କ ଜୀବନୀ ଏଥିରେ ଚିତ୍ରିତ ହୋଇଛି।





ସ୍ତୂପର ଉତ୍ତରଭାଗ ନାନା ଚିତ୍ରରେ ଶୋଭା ପାଉଛି। ଏ ଚିତ୍ରରେ ଗୋଟିଏ ମାଙ୍କଡ଼ ବୁଦ୍ଧଙ୍କୁ ଉପହାର ଦେବାର ଘଟଣା ଦେଖାଇ ଦିଆଯାଇଛି। ଅବଶ୍ୟ ବୁଦ୍ଧଙ୍କ ମୂର୍ତ୍ତି ନାହିଁ। ବୋଧି ବୃକ୍ଷହିଁ ତାଙ୍କର ପ୍ରତୀକ !



# ନିଜ ଲୋକ!

ଶ୍ରୀପୁର ଗ୍ରାମରେ ଥିଲେ ଜୟଦେବ ଦାସ । ସେ ଯୌବନରେ ବେପାର ବଣିଜ କରି ବେଶ୍ ଆୟ କରିଥିଲେ । ତେବେ ଗୋଟାଏ ଦୁର୍ଘଟଣାରେ ହଠାତ୍ ତାଙ୍କର ସ୍ତ୍ରୀ ଓ ଏକମାତ୍ର ପୁତ୍ରର ମୃତ୍ୟୁ ହୋଇଗଲା । ନଈରେ ଝଡ଼ ବର୍ଷାରେ ଡଙ୍ଗା ଓଲଟି ଏପରି ହେଲା । ଜୟଦେବ ଦାସ ସେଥିରେ ଏଭଳି ମର୍ମାହତ ହେଲେ ଯେ ସେ ଆଉ ବେପାର ବଣିଜରେ ମନ ଦେଲେ ନାହିଁ । ତେବେ ତାଙ୍କର ବେଶ୍ ସମ୍ପତ୍ତି ଥିଲା ।

ଜୟଦେବବାବୁ ବେଶ୍ କିଛି ଜମିଜମା ବି କରିଥିଲେ । ଭାଗ୍ୟକୁ ତାଙ୍କ ଘରେ କାମଦାମ କରୁଥିବା ଗୋପାଳ ସେସବୁ ଭଲ ଭାବରେ ଦେଖାଶୁଣା କରୁଥିଲା । ଗୋପାଳର ସ୍ତ୍ରୀ ଲକ୍ଷ୍ମୀ ରୋଷେଇବାସ କରୁଥିଲା । ସେ ଦୁହେଁ ସିନା ଚାକର ଚାକରାଣୀ ଥିଲେ, କିନ୍ତୁ ଜୟଦେବବାବୁଙ୍କୁ ସେମାନେ ନିଜର ବାପା ପରି ଦେଖୁଥିଲେ ।

ଜୟଦେବବାବୁଙ୍କୁ ସେତେବେଳେ ଅଶୀ ବର୍ଷ ବୟସ । ହଠାତ୍ ଦିନେ ତାଙ୍କ ଘରେ ଆସି ପହଞ୍ଚିଗଲେ ଦୂର ସମ୍ପର୍କରେ ତାଙ୍କ ଭଣଜା ବିଜୟ ଓ ତା' ସ୍ତ୍ରୀ ସୌଦାମିନୀ । ବିଜୟ କହିଲା, "ମୁଁ ଅନେକ ବର୍ଷ ବିଦେଶରେ ଥିଲି । ଘରକୁ ଫେରିବା ମାତ୍ରେ ଆପଣଙ୍କ କଥା ମନେ ପଡ଼ିଲା । ଏତେ ଯୋରେ ମନେ ପଡ଼ିଲା ଯେ ଆଉ ଘରେ ରହିପାରିଲି ନାହିଁ ।"

"ହଁ । ସେ ଆପଣଙ୍କୁ ଦେଖିବା ପାଇଁ ନିଜେ ଯେମିତି ଅସ୍ଥିର ହେଲେ, ମୋତେ ମଧ୍ୟ ସେମିତି ଶାନ୍ତିରେ ରହିବାକୁ ଦେଲେ ନାହିଁ ।" ସୌଦାମିନୀ କହିଲା ।

ଜୟଦେବବାବୁ ଅନେକ ଦିନ ଧରି ଏଭଳି ପ୍ରିୟ ବାକ୍ୟ ଶୁଣି ନଥିଲେ । ସେ ଖୁସି



ହେଲେ । "ଆସିଛ ଯଦି, କିଛିଦିନ ରୁହ ।" ସେ କହିଲେ ।

"ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ!" କହିଲା ବିଜୟ ।

ସୌଦାମିନୀକୁ ଖୁବ୍ ଭଲ ରାନ୍ଧି ଆସୁଥାଏ । ସେ ନାନା ସୁଆଦିଆ ଚିଜ ରାନ୍ଧି ବାବୁଙ୍କୁ ଖୁଆଇଲା । ଦିନେ ଜୟଦେବବାବୁ ଯେମିତି ଶୁଣି ପାରିବେ, ସେମିତି ଭାବରେ ବିଜୟ ସୌଦାମିନୀକୁ କହୁଥାଏ, "ନିଜ ଲୋକ ନହେଲେ ଏ ବୟସରେ କିଏ ମାମୁଁଙ୍କୁ ଦେଖାଶୁଣା କରିପାରିବ? ହଠାତ୍ ତାଙ୍କର ଅସୁଖ ବିସୁଖ ହେଲେ କିଏ ନିଜ ସୁଖକୁ ଭୁଲି କରି ତାଙ୍କ ତତ୍ତ୍ୱ ନେବ? ଆମେ ତ ଆଉ ସବୁଦିନେ ଏଠି ରହିପାରିବା ନାହିଁ! ମୋତେ ବଡ଼ ଚିନ୍ତା ଲାଗୁଛି ।"

ସୌଦାମିନୀ ଉତ୍ତର ଦେଲା, "ଏ ଗୋପାଳ ଓ ତା ସ୍ତ୍ରୀ ଉପରକୁ ଘର ଭଲ ମଣିଷ ଦେଖାଇ ହୁଅନ୍ତି । କିନ୍ତୁ ଅସଲରେ ସେ ଚୋର । କେତେ ଜିନିଷ ଯେ ଚୋରି କରି ନିଜ ଗାଁକୁ ପଠାଉଛନ୍ତି, ତା'ର ହିସାବ ନାହିଁ । ଯେତେ ଶୀଘ୍ର ମାମୁଁ ମରିବେ, ସେତେ ଶୀଘ୍ର ସେ ଦୁହେଁ ତାଙ୍କ ସମ୍ପତ୍ତି ମାଡ଼ି ବସିବେ ।"

"ଚୁପ୍, ଚୁପ୍ । ମାମୁଁ ଶୁଣିବେ । ଗୋପାଳର ସ୍ୱରୂପ ଜାଣିଲେ ତାଙ୍କ ଭଳି ମହତ୍ ଲୋକଙ୍କ ହୃଦୟରେ କିଭଳି ବେଦନା ହେବ, ସେକଥା ବୁଝୁଛ କି?" ବିଜୟ ଚେତାଇ ଦେଲା ।

ବିଜୟ ଓ ସୌଦାମିନୀର ବ୍ୟବହାରରେ ଜୟଦେବବାବୁ କ୍ରମେ ଏଭଳି ମୁଗ୍ଧ ହେଲେ ଯେ ଏହାର ଆଠ ଦଶଦିନ ପରେ ସେ ଯାହା କରିବା କଥା ସେ ଦିଗରେ ଦୃଢ଼ ପଦକ୍ଷେପ ନେଲେ । ସେ ଗୋପାଳ ଓ ଲକ୍ଷ୍ମୀକୁ ବିଦାୟ କରିଦେଲେ । ବିଜୟକୁ ନିଜର ଉତ୍ତରାଧିକାରୀ ମନୋନୀତ କରି ଉଇଲ୍ କରିଦେଲେ ।

ସପ୍ତାହକ ଭିତରେ ଅବସ୍ଥା ବଦଳିଗଲା । ଏଣିକି ବିଜୟ ଆଉ ତାଙ୍କ ପ୍ରତି ପୂର୍ବ ଭଳି ବିନୟପୂର୍ଣ୍ଣ ବ୍ୟବହାର କରେ ନାହିଁ କି ଲକ୍ଷ୍ମୀ ଆଉ ଭଲ ରନ୍ଧାରନ୍ଧି କରେ ନାହିଁ । କଥାବାର୍ତ୍ତାରେ ବି ସେମାନେ ରୁକ୍ଷ । ଜୟ-

ଦେଖିବାରୁ ଆଶ୍ଚର୍ଯ୍ୟ ହେଲେ । ତା'ପରେ ନିଜ କପାଳକୁ ନିନ୍ଦିଲେ । ସେ ଗୋପାଳକୁ ଝୁରି ହେଲେ, କିନ୍ତୁ ଯେଉଁ ନିରୀହ, ନିର୍ଦ୍ଦୋଷ ଓ ଅନୁଗତ ଭୃତ୍ୟକୁ ଭଗାଇ ଦେଇଛନ୍ତି, କେଉଁ ମୁହଁରେ ତାକୁ ଡକାଇବେ ?

ଦିନେ ସେ ଅସୁସ୍ଥ ହେଲେ । ତାଙ୍କର ବାଲ୍ୟ ବନ୍ଧୁ କବିରାଜ ବିବେକ ମିଶ୍ରଙ୍କ ଘର ଦୁଇ କୋଶ ଦୂରବର୍ତ୍ତୀ ଗାଁରେ । ସେ ତାଙ୍କୁ ଖବର ଦେବା ପାଇଁ ବିଜୟକୁ କହିଲେ । କିନ୍ତୁ ବିଜୟ ଖେକ୍‌ଠୋକ୍ ଉତ୍ତର ଦେଲା, "ମାମୁଁ, ଏ ବୟସରେ ଗୁଡ଼ାଏ ଔଷଧ ଖାଇ କାହିଁକି ଆହୁରି କଷ୍ଟ ପାଇବ ? ଭଗବାନଙ୍କୁ ଡାକ ।"

"ବାପା ! ଭଗବାନଙ୍କୁ ଡାକିବା ବିଷୟରେ ତୁ ମୋତେ ଉପଦେଶ ଦେବା ଆବଶ୍ୟକ ନାହିଁ । ତୋତେ ଯାହା କହୁଛି, କର ।" ସେ କହିଲେ ।

"ହଉ, ଦେଖିବା ।" ବିଜୟ କହିଲା । କିନ୍ତୁ ଦୁଇଦିନ ବିତିଗଲେ ବି ସେ କବିରାଜଙ୍କୁ ଖବର ଦେଲା ନାହିଁ । ଦୈବାତ୍ ଗାଁ ଚୌକିଦାର ଗୋଟାଏ କାମରେ ତାଙ୍କ ସହ ଦେଖା କରିବାକୁ ଆସିବାରୁ ସେ ତା' ହାତରେ ତୁରନ୍ତ କବିରାଜଙ୍କ ପାଖକୁ ଖବର ପଠାଇଲେ ।

ବିବେକ ମିଶ୍ର ପହଞ୍ଚିଯାଇ ତାଙ୍କୁ ପରୀକ୍ଷା କଲେ ଓ କହିଲେ, "ତମ ରୋଗ ଭୀଷଣ ହୋଇଥାନ୍ତା, କିନ୍ତୁ ମୁଁ ଠିକ୍ ସମୟରେ ଆସିଛି । ଏହାର ଅମୋଘ ଔଷଧ ଅଛି । ତମ ଭଣଜାକୁ ବୁଝାଇ ଦେଉଛି ।"



ଏହାକହି ସେ ଭଣଜାକୁ ବାହାରକୁ ଡାକି-ନେଇ କିଛି ଉପଦେଶ ଦେଇ ଚାଲିଗଲେ ।

ତିନିଦିନ ପରେ ଜୟଦେବବାବୁ ପୁଣି ସୁସ୍ଥ ହୋଇଗଲେ ଓ ସବାରି ଚଢ଼ି ସିଧା ଯାଇ ବନ୍ଧୁ ବିବେକଙ୍କ ଘରେ ପହଞ୍ଚିଯାଇ ତାଙ୍କୁ ତାଙ୍କ ଅମୋଘ ଔଷଧ ଯୋଗୁଁ ଧନ୍ୟବାଦ ଦେଲେ ।

"ଆଚ୍ଛା, ତମକୁ ବିଜୟ ଦୈନିକ କେତେ-ଥର ସେ ଔଷଧ ଦେଉଥିଲା ?" ବିବେକ ମିଶ୍ର ପଚାରିଲେ ।

"ଛଅଥର !" କହିଲେ ଜୟଦେବ-ବାବୁ ।

ବିବେକ ମିଶ୍ର ଗମ୍ଭୀର ଦେଖାଗଲେ ଓ କହିଲେ, "ଆଜି ଭିତରେ ସେ ଲୋକକୁ ଘରୁ ନିକାଳିଦିଅ । ମୁଁ ତାକୁ କହିଥିଲି କି ଏ ଔଷଧର ଗୁଣ ଏପରି ଯେ ଦୈନିକ ତିନିଥର ଦେଲେ ତମେ ସୁସ୍ଥ ହେବ, ଚାରିଥର ଦେଲେ ତମ ଅବସ୍ଥା ଭୀଷଣ ହେବ, ଛଅଥର ଦେଲେ ତିନି ଦିନରେ ମରିବ ।" ବିବେକ କହିଲେ ।

"ତେବେ ମୁଁ ଭଲ ହେଲି କିପରି ?" ଆଶ୍ଚର୍ଯ୍ୟ ହୋଇ ଜୟଦେବବାବୁ ପଚାରିଲେ ।

"ଆରେ ଭାଇ, ମୁଁ ତାକୁ ସିନା ସେପରି କହିଥିଲି, କିନ୍ତୁ ଔଷଧର ଗୁଣ ସେପରି ନୁହେଁ । ଛଅଥରରେହିଁ ତୁମର ବେଶି ଉପକାର ହେବା କଥା ।" ବିବେକ ମିଶ୍ର କହିଲେ ।

ଜୟଦେବ ସ୍ତମ୍ଭୀଭୂତ ହେଲେ । ତାଙ୍କ ଆଖି ଛଳ ଛଳ ହୋଇଗଲା । "ହାୟ, ଗୋପାଳ ଯଦି ଥାଆନ୍ତା ।" ସେ କହିଲେ ।

କବିରାଜ ହସି କହିଲେ, "ସେ ଅଛି । ମୋ ସହକାରୀ ଭାବରେ ସେ ଓ ତା' ସ୍ତ୍ରୀ ଔଷଧପତ୍ର ତିଆରି କରନ୍ତି ।"

ଜୟଦେବବାବୁ ସେହିଦିନ ନିଜ ଉଇଲ୍ ପରିବର୍ତ୍ତନ କରି ସମ୍ପତ୍ତିର ଅଧା ଗୋପାଳ ନାମରେ ଓ ବାକି ଅଧା ଗାଁ ବିଦ୍ୟାଳୟ ନାମରେ କରିଦେଲେ । ସସ୍ତ୍ରୀକ ବିଜୟ ବିଦା ହେଲା ଓ ସସ୍ତ୍ରୀକ ଗୋପାଳ ପ୍ରତ୍ୟା-ବର୍ତ୍ତନ କଲା ।





# ଉତ୍ତର ରାମାୟଣ

ସବୁକଥା କହିସାରିବା ପରେ ଲକ୍ଷ୍ମଣ କାନ୍ଦି କାନ୍ଦି ସେ ସ୍ଥାନ ତ୍ୟାଗ କରି ନୌକାରେ ବସି ଉତ୍ତର ତଟରେ ପହଞ୍ଚିଲେ । ସେଠାରେ ସେ ରଥରେ ବସିବା ପର୍ଯ୍ୟନ୍ତ ସୀତାଙ୍କୁ ବାରମ୍ବାର ଫେରି ଚାହୁଁଥିଲେ ଓ କାନ୍ଦୁଥିଲେ । ରଥ ଦୃଷ୍ଟି ପଥରୁ ଅନ୍ତର୍ହିତ ହେବା ପର୍ଯ୍ୟନ୍ତ ସୀତା ନୀରବରେ କାନ୍ଦୁଥିଲେ । ତା'ପରେ ସେ ଆଉ ସେ ଦୁଃଖ ସହ୍ୟ କରି ନ ପାରି ଜୋରରେ କାନ୍ଦି ଉଠିଲେ । ତାଙ୍କର ବିଳାପ ଧ୍ୱନିରେ ଗଗନ ପବନ ଯେପରି ଦୁଃଖରେ ସ୍ଥିର ହୋଇଗଲେ ।

ବିଳାପରତା ସୀତାଙ୍କୁ କେତେକ ମୁନିକୁମାରୀ ଦେଖିଲେ । ସେମାନେ ଆଶ୍ଚର୍ଯ୍ୟ ହୋଇ ବାଲ୍ମୀକିଙ୍କ ପାଖକୁ ଯାଇ ତାଙ୍କୁ କହିଲେ, "ଗୁରୁଦେବ, ଗଙ୍ଗାତଟରେ ଏକ ସୁନ୍ଦରୀ ନାରୀ ବସି ବିଳାପ କରୁଛି । ଦେଖିଲେ ଲାଗୁଛି ଯେପରି ଆକାଶରୁ କୌଣସି ପରୀ ପୃଥିବୀ ପୃଷ୍ଠରେ ଖସି ପଡ଼ିଛି । ତାଙ୍କୁ ଦେଖିଲେ ମନେହୁଏ, ସୌନ୍ଦର୍ଯ୍ୟ, ପବିତ୍ରତା ଓ କରୁଣା ଇତ୍ୟାଦି ଦିବ୍ୟଗୁଣରେ ସେ ପୂର୍ଣ୍ଣ । ଆପଣ ଦୟାକରି ସେଠାକୁ ଚାଲନ୍ତୁ ଓ ସେହି ନାରୀର ସହାୟତା କରନ୍ତୁ ।"

ଶୁଣିବା ମାତ୍ରେ ବାଲ୍ମୀକି ଶିଷ୍ୟ ଶିଷ୍ୟା ପରିବେଷ୍ଟିତ ହୋଇ ସୀତାଙ୍କ ନିକଟରେ ଯାଇ ପହଞ୍ଚିଲେ । ସେ ସୀତାଙ୍କୁ କହିଲେ, "ସ୍ୱର୍ଗୀୟ ମହାରାଜ ଦଶରଥଙ୍କ ପୁତ୍ରବଧୂଙ୍କୁ ମୁଁ ସ୍ୱାଗତ କରୁଛି । ଝିଅ, ତମେ ଏଠାକୁ କାହିଁକି ଓ କିପରି ଆସିଲ ତାହା ମୋର ଅନ୍ତର୍ଦୃଷ୍ଟି ଯୋଗେ ମୁଁ ଜାଣି ପାରିଛି । ମୋ ପାଖରେ

୯. ସୀତାଙ୍କର ବାଲ୍ମୀକି ଆଶ୍ରମରେ ପ୍ରବେଶ



ତୁମେ ନିର୍ଭୟରେ ବାସ କର। ତପସ୍ୱିନୀ ଓ ମୁନିକନ୍ୟାମାନେ ତୁମର ସେବା କରିବେ ଓ ଯତ୍ନ ନେବେ। ତୁମେ କୌଣସି ପ୍ରକାରେ ଚିନ୍ତା କରନାହିଁ। ତୁମ ଯୋଗୁ ମୋ ଆଶ୍ରମ ହେବ ଆହୁରି ପବିତ୍ର ଓ ଅଧିକ ମହାନ୍।"

ସୀତା ବାଲ୍ମୀକିଙ୍କୁ ପ୍ରଣାମ କରି ତାଙ୍କ ସହିତ ଆଶ୍ରମକୁ ଗଲେ। ବାଲ୍ମୀକି ଆଶ୍ରମରେ ପହଞ୍ଚି ମୁନିକନ୍ୟା ଓ ତପସ୍ୱିନୀମାନଙ୍କୁ ନିର୍ଦ୍ଦେଶ ଦେଲେ ସୀତାଙ୍କୁ ଆଦର ଯତ୍ନ ପୂର୍ବକ ରଖିବାକୁ। ଗର୍ଭବତୀ ସୀତାଙ୍କର ବିଶ୍ରାମ ଓ ଖାଦ୍ୟରେ ଯେପରି ତ୍ରୁଟି ନ ହୁଏ ସେ ତାହାର ସୁବ୍ୟବସ୍ଥା କଲେ।

ଫେରିବା ବେଳେ ଲକ୍ଷ୍ମଣ ସୁମନ୍ତ୍ରଙ୍କୁ ପଚାରିଲେ, "ସୁମନ୍ତ୍ର, ସୀତାଙ୍କ ବିଚ୍ଛେଦରେ ଶ୍ରୀରାମଙ୍କର ଅବସ୍ଥା କ'ଣ ହେବ ?"

"ଲକ୍ଷ୍ମଣ, ଶ୍ରୀରାମଙ୍କର ନିୟତି ଯାହା ଥିଲା ତାହାହିଁ ଘଟିଲା। ବହୁବର୍ଷ ପୂର୍ବେ ମୁନିମାନେ କହିଥିଲେ ଯେ ଶ୍ରୀରାମଙ୍କ ଜୀବନକାଳରେ ସୁଖ ବହୁତ ଅଳ୍ପ ସେ ପାଇବେ ଏବଂ ଘନିଷ୍ଠ ବ୍ୟକ୍ତିମାନଙ୍କର ବିୟୋଗର ଅଧିକ ଦୁଃଖ ସହିବେ। ମୁଁ ତମକୁ ଯାହା ସବୁ କହୁଛି ତାହା ଏକ ରହସ୍ୟମୟ କାହାଣୀ। ଏକଥା ତମେ କାହାକୁ କହିବ ନାହିଁ, ଏପରି କି ଭରତ ଶତ୍ରୁଘ୍ନଙ୍କୁ ମଧ୍ୟ ନୁହେଁ। ଶୁଣ ତେବେ :

"ଥରେ ମହାରାଜା ଦଶରଥ ବଶିଷ୍ଠ ଋଷିଙ୍କ ଆଶ୍ରମକୁ ଯାଇଥିଲେ। ସେତେବେଳେ ସେଠାରେ ମହାମୁନି ଅତ୍ରିଙ୍କ ପୁତ୍ର ଦୁର୍ବାସା ମଧ୍ୟ ଉପସ୍ଥିତ ଥିଲେ। କଥାବାର୍ତ୍ତା କରୁ କରୁ ଦଶରଥ ଦୁର୍ବାସାଙ୍କୁ ପଚାରିଲେ, "ମୁନିବର, ମୋର ସନ୍ତାନମାନଙ୍କର ଭବିଷ୍ୟତ କ'ଣ ? ମୋର ପୁତ୍ରମାନଙ୍କର ଆୟୁ କେତେ ? ଶ୍ରୀରାମର କେତେ ପୁତ୍ର ହେବେ ଓ ତା'ର ଜୀବନ କିପରି ବିତିବ ?"

ଏହି ପ୍ରଶ୍ନର ଉତ୍ତରରେ ଦଶରଥଙ୍କୁ ଦୁର୍ବାସା ଏକ ପୁରାତନ କାହାଣୀ ଶୁଣାଇଲେ।

"ଦେବାସୁର ସଂଗ୍ରାମରେ ଅସୁରମାନେ ପରାଜିତ ହୋଇ ମହାମୁନି ଭୃଗୁଙ୍କ ପତ୍ନୀଙ୍କ ନିକଟରେ ଆଶ୍ରୟ ନେଲେ। ଏକଥା ଦେଖି

ବିଷ୍ଣୁ କୁପିତ ହୋଇ ସୁଦର୍ଶନ ଚକ୍ର ପଠାଇ ଭୃଗୁଙ୍କ ପତ୍ନୀଙ୍କର ଶିରଚ୍ଛେଦ କଲେ । ଏକଥା ଦେଖି ମହର୍ଷି ଭୃଗୁ କ୍ରୁଦ୍ଧ ହୋଇ ବିଷ୍ଣୁଙ୍କୁ ଅଭିଶାପ ଦେଲେ, "ଆପଣ ପୃଥିବୀଲୋକରେ ଜନ୍ମ ହୋଇ ପତ୍ନୀ ବିଚ୍ଛେଦର ଦୁଃଖ ସହିବେ ।" ସେହି ଶାପକୁ କାର୍ଯ୍ୟକାରୀ କରିବା ପାଇଁ ସ୍ୱୟଂ ବିଷ୍ଣୁ ରାମ ରୂପରେ ଆପଣଙ୍କ ପାଖରେ ଜନ୍ମ ନେଇଛନ୍ତି ।"

ଏହିପରି କଥାବାର୍ତ୍ତା କରୁ କରୁ ଲକ୍ଷ୍ମଣ ଓ ସୁମନ୍ତ୍ର ସନ୍ଧ୍ୟାବେଳକୁ ଗୋମତୀ ନାମକ ସ୍ଥାନରେ ପହଞ୍ଚିଲେ । ପରଦିନ ସକାଳୁ ସେମାନେ ପୁଣି ଯାତ୍ରା ଆରମ୍ଭ କଲେ । ଅଯୋଧ୍ୟା ଯେତେ ଯେତେ ନିକଟ ହେଉଥାଏ, ଲକ୍ଷ୍ମଣଙ୍କ ମନ ସେତିକି ବ୍ୟାକୁଳ ହେଉଥାଏ ।

ଶେଷରେ ରଥ ଅଯୋଧ୍ୟାରେ ପହଞ୍ଚିଲା । ଲକ୍ଷ୍ମଣ ରଥରୁ ଓହ୍ଲାଇ ସିଧା ରାମଙ୍କ ପାଖକୁ ଯାଇ ଅତି ଦୀନ ଭାବରେ ହାତଯୋଡ଼ି କହିଲେ, "ମୁଁ ଆପଣଙ୍କ ଆଦେଶ ଅନୁସାରେ ମହାରାଣୀ ସୀତାଙ୍କୁ ଗଙ୍ଗାତଟରେ ବାଲ୍ମୀକିଙ୍କ ଆଶ୍ରମ ନିକଟରେ ଛାଡ଼ିଦେଇ ଆସିଲି; ମହାରାଜ ଆପଣ ଦୁଃଖିତ ହୁଅନ୍ତୁ ନାହିଁ । ବୃଦ୍ଧିର କ୍ଷୟ, ଉନ୍ନତିରୁ ପତନ, ସଂଯୋଗରୁ ବିୟୋଗ— ଭାଗ୍ୟର ଏହି ଚକ୍ର ଶାଶ୍ୱତକାଳରୁ ଏହି ଭାବରେ ଚାଲି ଆସୁଛି । ଆପଣଙ୍କୁ ଯେଉଁ ଅପଯଶ ସହିବାକୁ ପଡୁଛି ତାହା କାଳାନ୍ତରରେ ଦୂର ହୋଇଯିବ ।"

"ଲକ୍ଷ୍ମଣ, ତମେ ମୋର ଆଦେଶ ପାଳନ କରିଛ, ତମେ ସର୍ବଦା ମୋର ଆଜ୍ଞାକାରୀ





ଅନୁଜ ହୋଇ ରହିଥିବ । ତମେ ସୀତାଙ୍କୁ ଉପଯୁକ୍ତ ସ୍ଥାନରେ ଛାଡ଼ି ଆସିଛ ଶୁଣି ମୋର ଆଉ ମନରେ ଦୁଃଖ ନାହିଁ ।" ଶ୍ରୀରାମଚନ୍ଦ୍ର କହିଲେ ।

ପ୍ରାୟ ଚୁରି ପାଞ୍ଚଦିନ ଧରି ଶ୍ରୀରାମ ରାଜ୍ୟକାର୍ଯ୍ୟ ଭଲରୂପେ ଦେଖାଶୁଣା କରି ପାରିଲେ ନାହିଁ । ମନ ବ୍ୟାକୁଳ ହେଉଥାଏ । ସେହି ହେବାରୁ ସେ ଲକ୍ଷ୍ମଣଙ୍କୁ କିଛି ପ୍ରାଚୀନ କଥା ଶୁଣାଇ ମନକୁ ହାଲୁକା କରିବାକୁ ଚେଷ୍ଟା କରୁଥାନ୍ତି । ପ୍ରଥମେ ସେ ମହାରାଜା ନୃଗଙ୍କ କାହାଣୀ ଲକ୍ଷ୍ମଣଙ୍କୁ ଶୁଣାଇଲେ, ସେ କହିଲେ—

"ପ୍ରାଚୀନ କାଳରେ ନୃଗ ନାମରେ ଜଣେ ରାଜା ଥା'ନ୍ତି । ସେ ଲକ୍ଷ ଲକ୍ଷ ଗାଈ ସବୁ ଦାନ କରୁଥା'ନ୍ତି । ଥରେ ଦାନ ହୋଇ ସାରିଥିବା ଗୋଟିଏ ଗାଈ ଫେରି ଆସି ଦାନ ନ ହୋଇଥିବା ଗାଈପଲ ମଧ୍ୟରେ ମିଶିଗଲା । ରାଜା ବା ଏକଥା ଜାଣିବେ କିପରି । ସବୁଦିନ ପରି ରାଜା ଗୋଦାନ ଦେବାବେଳେ ସେହି ଗାଈଟି ଅନ୍ୟ ଏକ ବ୍ରାହ୍ମଣଙ୍କୁ ଦାନ ଦିଆଗଲା ।

ପ୍ରଥମ ବ୍ରାହ୍ମଣଟି ଗାଈକୁ ଖୋଜି ଖୋଜି ଶେଷରେ ସନ୍ଧାନ ପାଇଲା । ସେ ଗାଈକୁ ପୂର୍ବ ନାମରେ ଡାକିବାରୁ ଗାଈଟି ପଘା ଛଡ଼ାଇ ପ୍ରଥମ ବ୍ରାହ୍ମଣ ପାଖକୁ ଦୌଡ଼ି ଆସିଲା । ଏପରି ଘଟଣା ଦେଖି ଦ୍ୱିତୀୟ ବ୍ରାହ୍ମଣ ଆଶ୍ଚର୍ଯ୍ୟ ହୋଇ କହିଲା, "ଭାଇ, ଏ ଗାଈକୁ ତ ମହାରାଜା ମୋତେ ଦାନ ଦେଇଛନ୍ତି । ତମେ କାହିଁକି ଏହାକୁ ଡାକି ନେଉଛ ?"

ପ୍ରଥମ ବ୍ରାହ୍ମଣ କହିଲା, "ଭାଇ, ମହାରାଜା ଏହି ଗାଈଟିକୁ ମୋତେ ବହୁ ପୂର୍ବରୁ ଦାନ କରିଛନ୍ତି ।"

ତା'ପରେ ଦୁଇ ବ୍ରାହ୍ମଣ ଗାଈଟିକୁ ନେଇ ମହାରାଜାଙ୍କ ପାଖକୁ ଗଲେ । ସେଠାରେ କିନ୍ତୁ ଦ୍ୱାରପାଳ ସେମାନଙ୍କୁ ରାଜାଙ୍କ ପାଖକୁ ଛାଡ଼ିଲା ନାହିଁ । କିଛିଦିନ ପର୍ଯ୍ୟନ୍ତ ସେମାନେ ଅପେକ୍ଷା କଲେ । ରାଜା ନ ଆସିବାରୁ ଦୁଇ ବ୍ରାହ୍ମଣ ତାଙ୍କୁ ଅଭିଶାପ ଦେଲେ କି ଝିଟିପିଟି ଯେପରି ଲୋକଲୋଚନର ଅନ୍ତରାଳରେ ଥାଏ, ସେହିପରି ରାଜା ଜୀବନ ବିତାଇବେ ।

ରାଜା ଏକଥା ଶୁଣି ଦୁଃଖରେ ଦୁଇ ବ୍ରାହ୍ମଣଙ୍କୁ କ୍ଷମା ଗୃହିଲେ ଓ ଶାପମୋଚନ ପାଇଁ ପ୍ରାର୍ଥନା କଲେ । ସେମାନେ କହିଲେ ଦ୍ୱାପର ଯୁଗରେ ବସୁଦେବଙ୍କ ଦୟାରୁ ସେ ଏଥିରୁ ଉଦ୍ଧାର ପାଇବେ । ତା'ପରେ ମହାରାଜା ନୃଗ ନିଜ ପୁତ୍ର ବସୁଙ୍କର ରାଜ୍ୟାଭିଷେକ କରି ବନକୁ ଯାଇ ସେଠାରେ ବାସ କଲେ । ସେଠାରେ ସେ ମାଟି ଖୋଳାଇ ତା' ଭିତରେ ଘର କରି ରହିଲେ ଓ ଗୃହପଟରେ ଗଛ ସବୁ ଲଗାଇଲେ ଯଦ୍ୱାରା ସର୍ବଦା ସେହି ସ୍ଥାନଟି ଛାୟାବୃତ ଓ ଶୀତଳ ହୋଇ ରହିପାରିବ ।

ରାତି ଦ୍ୱିତୀୟ ପ୍ରହର ବେଳକୁ ରାଜା ରାମ ଲକ୍ଷ୍ମଣଙ୍କୁ ମହାରାଜା ନିମିଙ୍କ ବିଷୟରେ ଗଳ୍ପ ଶୁଣାଇଲେ ।

ମହାରାଜା ନିମି ଥିଲେ ଇକ୍ଷ୍ୱାକୁଙ୍କର ଦ୍ୱାଦଶ-ତମ ପୁତ୍ର । ନିମି ଗୋଟିଏ ସୁନ୍ଦର ନଗର ନିର୍ମାଣ କରିଥିଲେ ଯାହାର ନାମ ଥିଲା ବୈଜୟନ୍ତ । ସେହି ନଗରରେ ଥିଲା ଅନେକ ଉପବନ, ସରୋବର ଓ ନାନା ପ୍ରକାରର କ୍ରୀଡ଼ାବନ ଓ ଶିଶୁ ଉଦ୍ୟାନ । ସେହି ନଗରର ବାସିନ୍ଦାମାନେ ମହାନ୍ ସୁଖ ଉପଭୋଗ କରୁଥିଲେ । ନିମି ପିତାଙ୍କୁ ଖୁସି କରିବା ପାଇଁ ଗୋଟିଏ ଯଜ୍ଞ କରିବାକୁ ସ୍ଥିର କଲେ । ସେ ବଶିଷ୍ଠଙ୍କୁ ଯଜ୍ଞର ଋତ୍ୱିକ ହେବାକୁ ଅନୁରୋଧ କଲେ । ବଶିଷ୍ଠ କହିଲେ, ଯେ ଏହା ପୂର୍ବରୁ ଇନ୍ଦ୍ର ତାଙ୍କୁ ଏକ ଯଜ୍ଞ ସମ୍ପନ୍ନ କରାଇବାକୁ ନିମନ୍ତ୍ରଣ କରିଛନ୍ତି । ତେଣୁ ଇନ୍ଦ୍ରଙ୍କ ଯଜ୍ଞ ଶେଷ ହେବା ମାତ୍ରେ ସେ ଏହି ଯଜ୍ଞ କରିବେ ।





କିନ୍ତୁ ରାଜା ନିମି ବିଳମ୍ବ ସହ୍ୟ କରି ନ ପାରି ମହର୍ଷି ଗୌତମଙ୍କୁ ସେହି ଯଜ୍ଞରେ ଋତ୍ୱିକ ଭାବରେ ନିମନ୍ତ୍ରଣ କରି ଯଜ୍ଞ ସଂପନ୍ନ କଲେ ।

ଇନ୍ଦ୍ରଙ୍କ ଯଜ୍ଞ ସମାପ୍ତ କରିବା ପରେ ବଶିଷ୍ଠ ପୃଥିବୀକୁ ଫେରି ଆସି ସବୁକଥା ଶୁଣି ମନ ଭିତରେ ଟିକିଏ ରାଗିଯାଇ ରାଜାଙ୍କ ସହ ସାକ୍ଷାତ୍ କରିବାକୁ ଗଲେ । ସେତେବେଳେ ରାଜାଥିଲେ ଗଭୀର ନିଦ୍ରାମଗ୍ନ । ମହର୍ଷି କିଛି ସମୟ ଅପେକ୍ଷା କଲେ, ତା'ପରେ ହଠାତ୍ ସେ ଭାବିଲେ ଯେ ରାଜା ବୋଧହୁଏ ଇଚ୍ଛାକରି ତାଙ୍କର ଅବମାନନା କରୁଛନ୍ତି । ତେଣୁ ସେ ଅଭିଶାପ ଦେଇ କହିଲେ, "ରାଜନ୍, ତମେ ଅନ୍ୟ ମୁନି ଦ୍ୱାରା ଯଜ୍ଞ କରାଇ ମୋତେ ଅପମାନ ଦେଇଛ । ତେଣୁ ତୁମର ଏହି ଅସଦାଚରଣ ପାଇଁ ମୁଁ ଅଭିଶାପ ଦେଉଛି କି ତୁମର ଶରୀର ଅଚେତନ ହୋଇଯିବ ଏବଂ ତୁମେ ଆଉ କୌଣସି ପାଇଁ କାର୍ଯ୍ୟକ୍ଷମ ରହିପାରିବ ନାହିଁ ।"

କିଛି ସମୟ ପରେ ରାଜାଙ୍କର ନିଦ୍ରା ଭାଙ୍ଗିବାରୁ ସେ ଖବର ପାଇଲେ କି ବଶିଷ୍ଠ ଆସି କିଛି ସମୟ ଅପେକ୍ଷା କରି ଏପରି ଅଭିଶାପ ଦେଇ ଯାଇଛନ୍ତି । ରାଜା ମଧ୍ୟ ବଶିଷ୍ଠଙ୍କୁ ଶାପ ଦେଇ କହିଲେ, "ମୁନିବର ମୁଁ ନିଦ୍ରାମଗ୍ନ ଅବସ୍ଥାରେ ଆପଣ ମୋତେ ଶାପ ଦେଇଛନ୍ତି । ମୁଁ ମଧ୍ୟ ଆପଣଙ୍କୁ ଅଭିଶାପ ଦେଉଛି କି ଆପଣଙ୍କ ଶରୀର ମଧ୍ୟ ଅଚେତନ ହୋଇଯିବ ।"

ଏହିଭଳି ଭାବରେ ଦୁହେଁ ଦୁହିଁଙ୍କୁ ଅଭିଶାପ ଦେବା ଫଳରେ ଦୁହେଁ ବିଦେହ ବା ଶରୀରହୀନ ହୋଇଗଲେ । ତା'ପରେ ବଶିଷ୍ଠ ପିତା ବ୍ରହ୍ମାଙ୍କ ନିକଟକୁ ଯାଇ କହିଲେ, "ପିତା, ମୁଁ ରାଜା ନିମିଙ୍କ ଅଭିଶାପ ଯୋଗୁ ଶରୀରହୀନ ହୋଇ ବିଚରଣ କରୁଛି । ଶରୀରର ଅଭାବରୁ ମୁଁ କୌଣସି କାର୍ଯ୍ୟ କରିପାରୁ ନାହିଁ । ତେଣୁ ଅନୁଗ୍ରହ କରି ମୋତେ କୌଣସି ଶରୀର ପ୍ରଦାନ କରନ୍ତୁ ।"

ବ୍ରହ୍ମା କହିଲେ, "ବତ୍ସ, ତୁମେ ମିତ୍ରବରୁଣଙ୍କ ତେଜରୁ ପୁନଃଶ୍ଚ ଶରୀର ପ୍ରାପ୍ତ କରିବ ।" ବ୍ରହ୍ମାଙ୍କ ଦୟାରୁ ବଶିଷ୍ଠ ଶରୀର ପ୍ରାପ୍ତ କରି ଇକ୍ଷ୍ୱାକୁ ବଂଶର କୁଳ ପୁରୋହିତ ହୋଇ ରହିଲେ ।

ଏଣେ ଋଷିଗଣ ନିମିଙ୍କ ଶରୀର ରକ୍ଷା କଲେ ଓ ବର ଦେଲେ ଯେ ସେ ପ୍ରାଣୀଗଣଙ୍କର ଚକ୍ଷୁର ପଲକରେ ବାସ କରନ୍ତୁ । ତା'ପରେ ନିମିଙ୍କ ଶରୀରକୁ ନେଇ ସେ ଏକ ଯଜ୍ଞ କଲେ ସେଥିରୁ ଏକ ତେଜୀୟାନ ବାଳକ ଉତ୍ପନ୍ନ ହେଲ । ତାକୁ ସେମାନେ ନାମ ଦେଲେ ମିଥି । ସେହିଁ ମିଥିଲ ନଗର ନିର୍ମାଣ କଲେ ଓ ତାଙ୍କର ନାମରେ ଏହା ନାମିତ ହେଲ । ତାଙ୍କର ଅନ୍ୟ ନାମ ଜନକ ।

ଶ୍ରୀରାମଚନ୍ଦ୍ରଙ୍କ ମୁଖରୁ ନିମି ରାଜାଙ୍କ ଗଳ୍ପ ଶୁଣିବା ପରେ ଲକ୍ଷ୍ମଣ କହିଲେ, "ଅଗ୍ରଜ, କ୍ଷତ୍ରିୟ ହୋଇ ମଧ୍ୟ ନିମି ବଶିଷ୍ଠଙ୍କ ସହିତ ଏପରି ବ୍ୟବହାର କାହିଁକି କଲେ ?"



"ପ୍ରତ୍ୟେକ ବ୍ୟକ୍ତି ମଧ୍ୟରେ ରାଗଦ୍ୱେଷ ହେଉଛି ପରମ ଶତ୍ରୁ । ସେଥିପାଇଁ ମଣିଷ ବିବେକ ହରାଏ ଓ ଶାନ୍ତି ହରାଏ । କ୍ରୋଧ ଉପରେ ରାଜା ଯଯାତିଙ୍କର ନିୟନ୍ତ୍ରଣ ଅବ୍ୟାହତ ଥିଲ ।" ଶ୍ରୀରାମଚନ୍ଦ୍ର କହିଲେ । ତା'ପରେ ସେ ଲକ୍ଷ୍ମଣଙ୍କୁ ଯଯାତିଙ୍କର ଗଳ୍ପ ଶୁଣାଇଲେ ।

ନହୁଷପୁତ୍ର ମହାରାଜା ଯଯାତିଙ୍କର ଥିଲେ ଦୁଇଜଣ ସ୍ତ୍ରୀ । ଜଣେ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ଦେବଯାନୀ ଓ ଦ୍ୱିତୀୟା ରାଜା ବୃଷପର୍ବାଙ୍କ କନ୍ୟା ଶର୍ମିଷ୍ଠା । ରାଜା ଶର୍ମିଷ୍ଠାଙ୍କୁ ଅଧିକ ଭଲ ପାଉଥିଲେ ଓ ଶର୍ମିଷ୍ଠାଙ୍କ ପୁତ୍ର ପୁରୁ ମଧ୍ୟ ପୁତ୍ରମାନଙ୍କ ମଧ୍ୟରେ ଥିଲେ ତାଙ୍କର ସର୍ବାପେକ୍ଷା ପ୍ରିୟ ପୁତ୍ର । ଏକଥା ଦେବଯାନୀଙ୍କ ପୁତ୍ର ଯଦୁ ସହ୍ୟ କରିପାରୁ ନଥିଲେ ।

ଦିନେ ଯଦୁ, ମାତା ଦେବଯାନୀଙ୍କୁ କହିଲେ, "ମା', ତମେ ବିଖ୍ୟାତ ଗୁରୁ ଶୁକ୍ରାଚାର୍ଯ୍ୟଙ୍କ କନ୍ୟା ହୋଇ ମଧ୍ୟ ପିତା ତମକୁ ହତାଦର କରୁଛନ୍ତି । ମୁଁ ମଧ୍ୟ ସେହିପରି ବ୍ୟବହାର ପାଉଛି । ଏପରି ରହିବା ଅପେକ୍ଷା ମୁଁ ଠିକ କରିଛି ଆତ୍ମହତ୍ୟା କରିବି । ତମେ ଏଥିପାଇଁ ମୋତେ ଅନୁମତି ଦିଅ ।" ଏତକ କହି ସେ କାନ୍ଦିଲେ ।

ପୁତ୍ରର ଦୁଃଖ ଦେଖି ଦେବଯାନୀ ଦୁଃଖିତ ହେଲେ ଓ ମନେ ମନେ ରାଗି ଉଠିଲେ । ସେ ନିଜ ପିତାଙ୍କୁ ସ୍ମରଣ କଲେ । ଶୁକ୍ରାଚାର୍ଯ୍ୟ

ତତ୍‌କ୍ଷଣାତ୍ ସେଠାରେ ଆସି ପହଞ୍ଚିଲେ । ଦେବଯାନୀ ପିତାଙ୍କୁ ସମସ୍ତ କଥା ନିବେଦନ କରି କହିଲେ, "ପିତା ଏ ଅପମାନ ସହ୍ୟ କରିବା ଅପେକ୍ଷା ବରଂ ମୁଁ ଆତ୍ମହତ୍ୟା କରିବି ।"

ଝିଅର ଦୁଃଖ ଦେଖି ଶୁକ୍ରାଚାର୍ଯ୍ୟ ରାଗିଗଲେ । ଓ ଯଯାତିଙ୍କୁ ଅଭିଶାପ ଦେଇ କହିଲେ, "ଯେଉଁ ଯୌବନର ଗର୍ବରେ ତୁ ଦେବଯାନୀ ପ୍ରତି ଏପରି ବ୍ୟବହାର କରିଛୁ, ସେହି ଯୌବନ ତୁ ଅଚିରେ ହରାଇ ବୃଦ୍ଧାବସ୍ଥା ପ୍ରାପ୍ତ ହେବୁ ।"

ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପରେ ତତ୍‌କ୍ଷଣାତ୍ ଯଯାତି ଅକାଳ ଜରା ଦ୍ୱାରା ଆକ୍ରାନ୍ତ ହେଲେ । ଯଯାତି ପୁତ୍ରମାନଙ୍କୁ ପାଖକୁ ଡାକି କହିଲେ, "ପୁତ୍ରଗଣ, ମୁଁ ଶୁକ୍ରାଚାର୍ଯ୍ୟଙ୍କ ଶାପରେ ଅକାଳରେ ଜରାଗ୍ରସ୍ତ ହୋଇଛି । ମୋର ସଂସାରର ସୁଖଭୋଗର ଇଚ୍ଛା ଏପର୍ଯ୍ୟନ୍ତ ତୃପ୍ତ ହୋଇନାହିଁ । ତେଣୁ ଯଦି କେହି ନିଜର ଯୌବନ କିଛିକାଳ ପାଇଁ ମୋତେ ଦେଇ ପାରନ୍ତା ତାଙ୍କୁହିଁ ମୁଁ ମୋ ପରେ ରାଜଗାଦୀ ଦିଅନ୍ତି । କିଛି ବର୍ଷ ପରେ ପୁଣି ମୁଁ ମୋ ବୃଦ୍ଧାବସ୍ଥାକୁ ଫେରିପା'ନ୍ତି ।"

ପୁତ୍ରମାନେ ଚୁପ୍ ରହିଲେ । କେବଳ ପୁରୁହିଁ ପିତାଙ୍କ ପାଇଁ ଏ ମହାନ୍ ତ୍ୟାଗ କରିବାକୁ ପ୍ରସ୍ତୁତ ହେଲେ । ପୁରୁଙ୍କର ଯୌବନ ପ୍ରାପ୍ତ କରି ରାଜା ଯଯାତି ସହସ୍ର ବର୍ଷ ପର୍ଯ୍ୟନ୍ତ ରାଜ୍ୟଶାସନ କଲେ ଓ ସହସ୍ର ଯଜ୍ଞ କଲେ । ପରେ ସେ ପୁତ୍ରଙ୍କୁ ତାଙ୍କ ଯୌବନ ଫେରାଇ ଦେଇ ନିଜେ ବୃଦ୍ଧାବସ୍ଥା ଗ୍ରହଣ କଲେ । ପୁରୁଙ୍କୁ ତାଙ୍କର ଉତ୍ତରାଧିକାରୀ ରୂପେ ଅଭିଷେକ କରାଇଲେ । ପୁରୁ ନିଜର ଶାସନକାଳ ମଧ୍ୟରେ ବହୁ କୀର୍ତ୍ତି ଅର୍ଜନ କଲେ ଓ ମହାନ୍ ରାଜଚକ୍ରବର୍ତ୍ତୀ ଭାବରେ ସୁଖ୍ୟାତି ଲାଭ କଲେ ।

ଶ୍ରୀରାମ କଥା ସମାପ୍ତ କଲେ । ଲକ୍ଷ୍ମଣ ଅଗ୍ରଜଙ୍କ ସତ୍‌ସଙ୍ଗ ଲାଭ କରି ନିଜକୁ କୃତାର୍ଥ ମନେ କଲେ ।






# ଜ୍ଞାନୋଦୟ

ରୁଦ୍ରପୁରର ରାଜା ସିଂହକେତୁ ଥିଲେ ନିଷ୍ଠୁର ଓ ଅତ୍ୟାଚାରୀ । ପ୍ରଜାମାନଙ୍କୁ କଷ୍ଟ ଦେଇ ଧନ ଶୋଷଣ କରିବା ତାଙ୍କର ଥିଲା ପ୍ରଧାନ କାମ । ସାମାନ୍ୟ କଥାରେ ସେ ଦେଉଥିଲେ କଠୋର ଦଣ୍ଡ । କେହି ଯଦି ଅନ୍ୟାୟ ବିରୁଦ୍ଧରେ ବିଦ୍ରୋହ କରେ ତ ରାଜା ତାକୁ ଶୂଳରେ ବସାଇ ମାରି ଦିଅନ୍ତି ।

କିନ୍ତୁ ତାଙ୍କର ବୃଦ୍ଧ ମନ୍ତ୍ରୀ ଧର୍ମଚରଣ ଥିଲେ ବିବେକବାନ୍ । ସେ ତାଙ୍କ ପିତାଙ୍କ ସମୟରୁହିଁ ମନ୍ତ୍ରୀ ପଦରେ ଥିଲେ । ସେ ତାଙ୍କୁ ପରିବର୍ତ୍ତନ କରିବାକୁ ବହୁତ ଚେଷ୍ଟା କରି ବିଫଳ ହେଲେ । ରାଜାଙ୍କର ଏପରି ମନୋଭାବ ଯୋଗୁ ରୁଦ୍ରପୁରର ପ୍ରଜାମାନେ କୁହନ୍ତି, "ଏ ଶାସନ ରାକ୍ଷସର ଶାସନ ।"

ରାଜା ସିଂହକେତୁ ବଡ଼ ଶୀକାର ପ୍ରିୟ ଥିଲେ । ଦିନେ ଶୀକାର କରିବାକୁ ଜଙ୍ଗଲକୁ ଯାଇଥା'ନ୍ତି । ଗୋଟିଏ ହରିଣ ପଛରେ ଯାଇ ଯାଇ ସେ ଘୋର ଜଙ୍ଗଲରେ ପ୍ରବେଶ କଲେ । ସେତେବେଳକୁ ସେ ତାଙ୍କର ଅନୁଚରବର୍ଗଙ୍କଠାରୁ ଅନେକ ଦୂରକୁ ଚାଲି ଯାଇଥିଲେ, ରାଜା ସେମାନଙ୍କୁ ବହୁତ ଖୋଜି ଖୋଜି ନ ପାଇ ଶେଷରେ ରାଜଧାନୀକୁ ଏକେଲା ଫେରିଯିବାର ମନସ୍ଥ କଲେ । ସେ ଘୋଡାରେ ଯାଉଥା'ନ୍ତି ହଠାତ୍ ତାଙ୍କର ଚାରିପଟରୁ ଜଙ୍ଗଲୀ ଡାକୁମାନେ ତାଙ୍କ ଉପରେ ଜାଲ ପକାଇ ତାଙ୍କୁ ଧରିନେଲେ । ଡାକୁମାନେ ରାଜାଙ୍କର ମୂଲ୍ୟବାନ୍ ପୋଷାକ ଓ ଅଳଙ୍କାର ଲୁଟିନେଲେ ଓ ଡାକୁ ସର୍ଦ୍ଦାର ପାଖକୁ ନେଇଗଲେ ।

ସର୍ଦ୍ଦାର କଠୋର ସ୍ୱରରେ ପଚାରିଲା, "ଠିକ୍ କୁହ, ତୁମେ କିଏ ?"

"ମୁଁ ରୁଦ୍ରପୁରର ରାଜା ସିଂହକେତୁ ।" ରାଜା କହିଲେ ।

ସୁରେନ୍ଦ୍ର

ଏକଥା ଶୁଣି ସର୍ଦ୍ଦାର ନିଜର ଅନୁଚର-ମାନଙ୍କୁ କହିଲା, "ଆରେ ମୂର୍ଖମାନେ, ଏହାଙ୍କୁ ଶିଘ୍ର ବନ୍ଧନମୁକ୍ତ କର । ଏ ଲୋକ ତ ଆମ୍ଭର ଭିତରୁ ଜଣେ ।"

"ରାଜାଙ୍କ ଗୁହିଁ ସର୍ଦ୍ଦାର କହିଲା, "ସେମାନେ ନ ଜାଣି ତୁମକୁ ବାନ୍ଧିଛନ୍ତି । ସେମାନେ ଜାଣନ୍ତିନାହିଁ ଯେ ତମେ ଆମରିମାନଙ୍କ ପରି ଜଣେ । ତମେ ରାଜତ୍ୱରେ ଥିଲେ ଆମର ଲାଭ । ଏବେ ଯାଇପାର ।"

ସର୍ଦ୍ଦାରର କଥାରୁ ରାଜା କିଛି ବୁଝିପାରିଲେ ନାହିଁ । ଯାହାହେଉ ଡକାୟତମାନଙ୍କ ହାତରୁ ରକ୍ଷା ପାଇ ଜୀବିତ ଆସି ପାରିଲେ ବୋଲି ଖାଇ ଖାଇ ଖୁସିରେ ଘୋଡ଼ା ଉପରେ ବସି ଫେରୁଥା'ନ୍ତି । କିଛି ବାଟ ଯିବା ପରେ ଏକ ବିକଟ ଅଟ୍ଟହାସ କରି ଏକ ପିଶାଚ ଆସି ତାଙ୍କ ବାଟ ଓଗାଳିଲା । ରାଜା ତତ୍‌କ୍ଷଣାତ୍ ତରବାରି ଉଠାଇଲେ ମାରିବେ ବୋଲି ।

ପିଶାଚ ଆହୁରି ଜୋର୍‌ରେ ହସି ହସି କହିଲା, "ଆରେ ମୂର୍ଖ ତୁ କ'ଣ ଜାଣୁନା କି ମୋର ଦେହ ନାହିଁ ? ତରବାରିରେ ତୁ ମୋର କ'ଣ କରିବୁ ? ତୁ ଚେଷ୍ଟା କଲେ ମଧ୍ୟ ମୋର କିଛି କ୍ଷତି କରିପାରିବୁ ନାହିଁ । କିନ୍ତୁ ମୁଁ ଚେଷ୍ଟା କଲେ ତୋ ଦେହର ସାରା ରକ୍ତ ପିଇଯିବ । ମୁଁ ରକ୍ତପିପାସୀ ପିଶାଚ । ମନେହୁଏ ତ ତୁ ବଡ଼ ସାହସୀ । କହ, ତୁ କିଏ ?"

"ମୁଁ ରୁଦ୍ରପୁରର ରାଜା ସିଂହକେତୁ ।" ରାଜା ଉତ୍ତର ଦେଲେ ।



ଏକଥା ଶୁଣି ପିଶାଚ ଟିକିଏ ଶଙ୍କିତ ହୋଇ କହିଲା, "ଓଃ ତୁ ତାହେଲେ ସିଂହକେତୁ ! ମୁଁ ଶୁଣିଛି ତୁ ଏପରି ଲୋକ ଯେ ଚେଷ୍ଟାକଲେ ପିଶାଚକୁ ମଧ୍ୟ ଖାଇପାରୁ । ମୁଁ ତୋର କ୍ଷତି କରନାହିଁ ଭଲ, ନହେଲେ ପିଶାଚର ରାଜା ମୋତେ କଠିନ ଦଣ୍ଡ ଦେଇଥାʼନ୍ତା । କାରଣ ତୁ ଆମକୁ ନିତ୍ୟ ଆହାର ଯୋଗାଉଥିବା ଆମର ପରମ ବନ୍ଧୁ ।" ଏତିକି କହି ପରେ ପିଶାଚ କୁଆଡ଼େ ଚାଲିଗଲା ।

ଏସବୁ କଥା ଶୁଣି ସିଂହକେତୁ ଆହୁରି ଆଶ୍ଚର୍ଯ୍ୟ ହେଲେ । ସେହିକଥା ଭାବୁ ଭାବୁ ସେ ପୁଣି ରାଜଧାନୀ ଆଡ଼କୁ ଅଗ୍ରସର ହେଲେ । କିଛିଦୂର ଯିବା ପରେ ହଠାତ୍ ସେ ଏକ ଭୀଷଣ ଗର୍ଜ୍ଜନ ଶୁଣି ପାରିଲେ । ସେ କିଛି ଭାବିବା ପୂର୍ବରୁ ଦେଖିଲେ ଗୋଟାଏ ବଡ଼ ଗଛ ତଳେ ଜଣେ ରାକ୍ଷସ ଥାଇ ହାତ ବଢ଼ାଇ ତାଙ୍କୁ ତାʼ ମୁଠା ଭିତରେ ଉଠାଇ ଧରିଲା ।

ରାକ୍ଷସ କହିଲା, "ଆରେ ମାନବ, ତୁ ବଡ଼ ଭଲ ସମୟରେ ମୋ ପାଖକୁ ଆସିଛୁ । ମୋତେ ବଡ଼ ଭୋକ ଲାଗୁଥିଲା ।" ରାଜାଙ୍କୁ ଖାଇବା ପୂର୍ବରୁ ସେ ଟିକିଏ ଅଟକି ଗଲା ଓ ପଚାରିଲା, "ତୋ ବେଶଭୂଷାରୁ ମନେ ହେଉଛି ତୁ କୌଣସି ଜଣାଶୁଣା ଲୋକ । ତୁ କିଏ କହ ତ ?"

"ମୁଁ ରୁଦ୍ରପୁରର ରାଜା ସିଂହକେତୁ" ରାଜା ଉତ୍ତର ଦେଲେ ।

ଏକଥା ଶୁଣି ରାକ୍ଷସ ହସି ହସି କହିଲା, "ଆରେ ତୋତେ ମାରିଲେ ମୁଁ ହିଁ ଭୋକରେ





ମରିବ । ମୁଁ ତତେ ଆଶୀର୍ବାଦ ଦେଉଛି ତୁ ବହୁଦିନ ବଞ୍ଚି ଥା' । ତୋତେ ମୁଁ ଖାଇବି ନାହିଁ । ଯା ନିଜ ବାଟରେ ଚାଲ ।" ଏତିକି କହି ରାକ୍ଷସ ତାଙ୍କୁ ଛାଡ଼ିଦେଲା ।

ରାଜା ଆହୁରି ଆଶ୍ଚର୍ଯ୍ୟ ହେଲେ । ଡାକୁ ସର୍ଦ୍ଦାର, ପିଶାଚ ଓ ରାକ୍ଷସ କଥା ଭାବି ଭାବି ରାଜା ଆସୁଥାନ୍ତି ତାଙ୍କ ଅନୁଚରବର୍ଗଙ୍କ ସହିତ ଦେଖା ହେଲା । ରାଜା କିଛି ନ କହି ରାଜଧାନୀ ଆଡ଼କୁ ଚାଲିଲେ । ସନ୍ଧ୍ୟା ସୁଦ୍ଧା ସମସ୍ତେ ରାଜଧାନୀରେ ପହଞ୍ଚିଲେ ।

ରାଜା ନଗରରେ ପହଞ୍ଚିବା ମାତ୍ରେ ମନ୍ତ୍ରୀ ଧର୍ମଚରଣଙ୍କୁ ଡକାଇ ପଠାଇଲେ । ସେ ତାଙ୍କୁ ସମଗ୍ର ବୃତ୍ତାନ୍ତ କହି ପଚାରିଲେ, "ମନ୍ତ୍ରୀବର, ଆପଣ ମୋ ପିତାଙ୍କ ସମୟରୁ ଅଛନ୍ତି । ବୟସରେ ବୃଦ୍ଧ ଲୋକ । ମୋତେ ବୁଝାଇ ଦିଅନ୍ତୁ ଡାକୁ ସର୍ଦ୍ଦାର, ପିଶାଚ ଓ ରାକ୍ଷସ ଏପରି କଥା ସବୁ କାହିଁକି କହିଲେ ଓ ମୋତେ ମୁକ୍ତ ଦେଲେ ?"

ଧର୍ମଚରଣ କିଛି ସମୟ ନୀରବ ରହିଲେ, ତା'ପରେ ସେ କହିଲେ, "ମହାରାଜ, ମୋର କୌଣସି ଦୋଷ ନ ଧରିଲେ ମୁଁ ଏସବୁ କଥାର ଅର୍ଥ କହି ପାରିବି । କିନ୍ତୁ ଆପଣ ରାଗି ନ ଯାଇ ଏକଥାର ସତ୍ୟତା ପ୍ରମାଣ କରିବାକୁ ଚେଷ୍ଟା କରନ୍ତୁ ।"

ସିଂହକେତୁ ମନ୍ତ୍ରୀଙ୍କ କଥାକୁ ସ୍ୱୀକାର କଲେ । ତା'ପରେ ମନ୍ତ୍ରୀ କହିଲେ, "ଡାକୁ ସର୍ଦ୍ଦାର ଆପଣଙ୍କୁ ନିଜ ଲୋକମାନଙ୍କ ମଧ୍ୟରୁ ଜଣେ ବୋଲି କହିଲା, ଏହାର ଅର୍ଥ ଡାକୁ ଯେପରି ବାଟରେ ଚାଲିଥିବା ଲୋକଙ୍କୁ ଲୁଟିନିଏ ଆପଣ ସେପରି ନିଜର ପ୍ରଜାମାନଙ୍କ ଧନସମ୍ପତ୍ତି ଲୁଟି ନେଉଛନ୍ତି । ତେଣୁ ଡାକୁ ଓ ରାଜା ମଧ୍ୟରେ କିଛି ପ୍ରଭେଦ ରହିଲା ନାହିଁ । ପିଶାଚ ଆପଣଙ୍କୁ ଖୁସିରେ ଛାଡ଼ିଦେଲା କାରଣ ଆପଣଙ୍କ ଦ୍ୱାରା ସେ ଲାଭବାନ୍ ହେଉଛି । ଆପଣ ରାଜ୍ୟରେ ଅଳ୍ପ କିଛି ଦୋଷ ତ୍ରୁଟି ଦେଖିଲେ ପ୍ରଜାମାନଙ୍କୁ ଫାଶୀ ଦେଇ ଦେଉଛନ୍ତି । ତେଣୁ ପିଶାଚ ସେଇ ସବୁ ଶବମାନଙ୍କୁ ଖାଇ ବଞ୍ଚୁଛି । ସେଥିପାଇଁ ସେ ଛାଡ଼ିଦେଲା । ଭୁତାପୁରେ ରାକ୍ଷସ ଦେଖିଲା

ଆପଣଙ୍କ ଶାସନ ତ ରାକ୍ଷସ ଶାସନ ପରି ହୋଇଛି । କେଉଁଠି ଟିକିଏ ଭୁଲଭଟକା ହୋଇଗଲେ କାଳେ ଆପଣ ଫାଶୀ ଦେବେ ସେଥିଯୋଗୁ ବହୁ ଲୋକ ପ୍ରାଣ ଭୟରେ ନଗର ଛାଡ଼ି ଲୋକାଳୟ ଛାଡ଼ି ଜଙ୍ଗଲକୁ ବା ଅନ୍ୟ ଦେଶକୁ ପଳାଉଛନ୍ତି । ଏମାନଙ୍କ ମଧ୍ୟରୁ କେତେକ ରାକ୍ଷସର ଖାଦ୍ୟ ହେଉଛନ୍ତି । ତେଣୁ ରାକ୍ଷସ ଆପଣଙ୍କୁ ମୁକ୍ତି ଦେଲା ଓ ବେଶିଦିନ ଜୀବିତ ରହିବାକୁ ଆଶିର୍ବାଦ ଦେଲା ।"

ରାଜା ମନ୍ତ୍ରୀଙ୍କର ସବୁକଥା ମନ ଦେଇ ଶୁଣିଲେ ଓ କହିଲେ, "ଏହାର ଅର୍ଥ ମୁଁ ଡାକୁ, ପିଶାଚ ଓ ରାକ୍ଷସ ସ୍ତରର ଜଣେ ବ୍ୟକ୍ତି ଯିଏ ପ୍ରଜାମାନଙ୍କ ଉପରେ ସେଇମାନଙ୍କ ପରି ଅତ୍ୟାଚାର କରୁଛି । ଇଏ ତ ବଡ଼ ଲଜ୍ଜାର କଥା ।"

ମନ୍ତ୍ରୀ କହିଲେ, "ମହାରାଜ, ଆପଣ ଏ ବିଷୟରେ ନିଜେ ଗଭୀର ଭାବରେ ଚିନ୍ତା କରନ୍ତୁ । ଯଦି ମୁଁ ଅଧିକ କିଛି କହିଥାଏ ମୋତେ କ୍ଷମା କରନ୍ତୁ ।"

ରାଜା ସିଂହାସନରୁ ଉଠି ମନ୍ତ୍ରୀଙ୍କୁ ପ୍ରଣାମ କରି କହିଲେ, "ମନ୍ତ୍ରୀବର, ଆପଣ ଯଥାର୍ଥରେହିଁ ଧର୍ମଚରଣ । ଆପଣଙ୍କ ଯୋଗୁ ଆଜି ମୋର ଜ୍ଞାନୋଦୟ ହୋଇଛି । ମୁଁ କଥା ଦେଉଛି ଯେ ଆଜିଠାରୁ ମୁଁ ମୋର ପ୍ରଜାଗଣଙ୍କର କଲ୍ୟାଣ ପାଇଁ ସବୁ ପ୍ରକାରେ ଚେଷ୍ଟା କରିବି । ଏଥିପାଇଁ ଆପଣ ମୋତେ ଆଶିର୍ବାଦ କରନ୍ତୁ ।"

ଧର୍ମଚରଣ ରାଜାଙ୍କୁ ଆଶିର୍ବାଦ ଦେଇ କହିଲେ, "ମହାରାଜ, ଆପଣ ଆଜି ଆପଣଙ୍କ ଉପରେ ସବାର ହୋଇଥିବା ଦୁଷ୍ଟଶକ୍ତିମାନଙ୍କ ଉପରେ ବିଜୟ ହାସଲ କରିଛନ୍ତି । ଇଏ ତ ବହୁତ ଆନନ୍ଦର କଥା ।"

ସେହିଦିନଠାରୁ ରାଜା ପ୍ରଜାଗଣଙ୍କର ମଙ୍ଗଳ ପାଇଁ ସବୁ ପ୍ରକାରରେ ଚେଷ୍ଟା କଲେ । ଅଳ୍ପ ସମୟ ମଧ୍ୟରେ ସେ ପ୍ରଜାମାନଙ୍କର ପ୍ରିୟରାଜା ରୂପେ ପରିଗଣିତ ହେଲେ ।





# ସୃଷ୍ଟିଭେଦ

ସୃଷ୍ଟିର ଆରମ୍ଭରେ ଅରଣି ନାମକ ଜଣେ ପ୍ରଭାବଶାଳୀ ଓ ତପସ୍ୟାଶକ୍ତି ସମ୍ପନ୍ନ ଋଷି ଥା'ନ୍ତି । ଥରେ ତାଙ୍କ ମନରେ ଏଇ ଭାବନା ଆସିଲା କି ଏତେ ପ୍ରକାର ଜୀବଙ୍କୁ ଭଗବାନ୍ କାହିଁକି ସୃଷ୍ଟି କଲେ ? କେବଳ ମନୁଷ୍ୟ କ'ଣ ଯଥେଷ୍ଟ ନୁହେଁ ?

ଏହି ଚିନ୍ତାକୁ ମନରେ ରଖି ସେ ବ୍ରହ୍ମାଙ୍କୁ ତପସ୍ୟା କଲେ ଓ ଅନ୍ୟ ପ୍ରାଣୀଙ୍କୁ ମନୁଷ୍ୟ ରୂପରେ ପରିବର୍ତ୍ତିତ କରିବାର ଶକ୍ତି ସେ ଲାଭ କଲେ । ସେ ସିଦ୍ଧିଲାଭ କରି ଫେରୁଥା'ନ୍ତି ବାଟରେ ଦେଖିଲେ ଗୋଟିଏ ଭୟଭୀତା ହରିଣୀ ପ୍ରାଣ ବିକଳରେ ଛୁଟିଛି ଓ ଗୋଟାଏ ବାଘ ତା'ର ପଶ୍ଚାତ୍‌ଧାବନ କରୁଛି । ସେ ତତ୍‌କ୍ଷଣାତ୍ ହରିଣୀକୁ ଗୋଟିଏ ସୁନ୍ଦରୀ ଯୁବତୀ ଓ ବାଘକୁ ଏକ ସୁନ୍ଦର ଯୁବକରେ ପରିଣତ କଲେ ।

ସୁନ୍ଦରୀ ଯୁବତୀକୁ ଦେଖିବା ମାତ୍ରେ ଯୁବକଟି ମୋହାଚ୍ଛନ୍ନ ହେଲା ଓ ତାକୁ ବିବାହ କରିବା ପାଇଁ ନିଷ୍ପତ୍ତି କଲା । ଦୁହେଁ ବିଭା ହୋଇ ସେହି ଜଙ୍ଗଲରେ ଘର କରି ରହିଥା'ନ୍ତି । କିନ୍ତୁ ଦୁହିଁଙ୍କର ପ୍ରକୃତି ଅଲଗା । ସ୍ତ୍ରୀଟି ମାଛମାଂସ ଖାଏନାହିଁ, ଶାନ୍ତ, ସରଳ ଓ ମଧୁର ସ୍ୱଭାବର । ଯୁବକଟି ବହୁତ ଉଗ୍ର ସ୍ୱଭାବର । ସବୁଦିନେ ଶିକାର କରି ନିରୀହ ଜନ୍ତୁ ସବୁ ମାରିଆଣେ । ଏସବୁ ଦେଖି ସ୍ତ୍ରୀ ଭାରି ଦୁଃଖିତ ହୁଏ । ଋଷି ଅରଣି ମଧ୍ୟ ସେହି ବନରେ ଏମାନଙ୍କ ଘରଠାରୁ କିଛି ଦୂରରେ କୁଟୀର ବନାଇ ବାସ କରୁଥା'ନ୍ତି ଓ ଏହି ନୂତନ ଦମ୍ପତିଙ୍କର ଜୀବନପଦ୍ଧତି ସେ ବହୁତ ମନଯୋଗ ସହିତ ଅଧ୍ୟୟନ କରୁଥା'ନ୍ତି । ଟିକିଏ ଟିକିଏ କଥାରେ ଦୁହିଁଙ୍କର ଝଗଡ଼ା ହୁଏ । ସ୍ତ୍ରୀ ଯେଉଁ ପଶୁପକ୍ଷୀ ପାଳିଥାଏ ସ୍ୱାମୀ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ସେଗୁଡ଼ିକ ଲୁଚେଇ ଲୁଚେଇ ଖାଇ ଦିଏ । ଇତିମଧ୍ୟରେ କେତୋଟି ସନ୍ତାନ ସନ୍ତତି ମଧ୍ୟ ହେଲେଣି । ସ୍ତ୍ରୀ ପଚାରେ ସ୍ୱାମୀକୁ, "ତମେ ମୋ ପରି ଫଳ ନ ଖାଇ କାହିଁକି ପଶୁପକ୍ଷୀଙ୍କ ପ୍ରତି ନିର୍ଦ୍ଦୟ ହେଉଛ ?"

ସ୍ୱାମୀ କୁହେ, "ତମେ ଆଜିଠୁ ବରଂ ମୋ ପରି ମାଂସାହାର କର ।"

ଏହିପରି ଝଗଡ଼ା ହେଉ ହେଉ କ୍ରମେ ସ୍ୱାମୀ ସ୍ତ୍ରୀକୁ ପିଟିବାକୁ ଲାଗିଲା । ଥରେ ସେ ଏତେ ରାଗିଗଲା ଯେ ହାତରେ ଖଣ୍ଡା ଧରି ତା' ସ୍ତ୍ରୀକୁ ମାରି ଦେବାକୁ ଦୌଡ଼ିଲା । ସ୍ତ୍ରୀ ବଗୃସ ଭୟରେ ଦୌଡ଼ିଲା । ସ୍ୱାମୀ ମଧ୍ୟ ପଛେ ପଛେ ଦୌଡ଼ୁଥାଏ । ସ୍ତ୍ରୀଟି ଦୌଡ଼ି ଦୌଡ଼ି ଯାଇ ଅରଣି ମୁନିଙ୍କ ଆଶ୍ରମରେ ଲୁଚିଗଲା । ପଛେ ପଛେ ଯାଇ ପହଞ୍ଚିଲା ସ୍ୱାମୀ । ଅରଣି ମୁନି ସ୍ୱାମୀକୁ ବୁଝାଇଲେ, "ତମେ ଦୁହେଁ ଏତେ ଝଗଡ଼ା କରି କିପରି ସଂସାର ଚଳାଉଛ ? ବରଂ ଦୁହେଁ ଅଲଗା ହୋଇଯାଅ ଓ ଦୁଇ ବିପରୀତ ଦିଗରେ ଚାଲିଯାଅ । ସେ ଦୁହିଁଙ୍କୁ କିଛି ପତ୍ର ଦେଇ କହିଲେ, "ଦୁହେଁ ଦୁଇ ବିପରୀତ ଦିଗରେ ଯାଅ । ଯେତେବେଳେ ଏ ପତ୍ରରୁ ରସ ଶୁଖିଯିବ, ସେତେବେଳେ ତମେମାନେ ଏ ଜଞ୍ଜାଳରୁ ମୁକ୍ତି ପାଇବ ।"

ଅରଣି ମୁନିଙ୍କ ଆଦେଶ ମାନି ଦୁହେଁ କିଛି କିଛି ପତ୍ର ଧରି ଦୁଇ ବିପରୀତ ଦିଶରେ ଗଲେ । ପତ୍ରଗୁଡ଼ିକ ଶୁଖିବା ମାତ୍ରେ ଦୁହେଁ ପୂର୍ବରୂପ ଫେରି ପାଇଲେ । କିନ୍ତୁ ସେମାନଙ୍କର ପିଲାମାନେ ବାପମା'ଙ୍କ ଗୁଣ ସବୁ ପାଇଥିଲେ, କିଏ ଥିଲା ବାପପରି, କିଏ ବା ମା' ପରି ।

ଅରଣି ମୁନି ଏବେ ବୁଝିପାରିଲେ କି ସୃଷ୍ଟିରେ ଭେଦ ବା ଭିନ୍ନତାର ଆବଶ୍ୟକତା ରହିଛି । ସମସ୍ତିଙ୍କୁ ମଣିଷ କରିବାର ଚିନ୍ତା ସେ ତ୍ୟାଗ କଲେ । ସେ ବୁଝିଲେ ଯେ ସମସ୍ତେ ଶରୀରରେ ମଣିଷ ହେବା ଯଥେଷ୍ଟ ନୁହେଁ, ଚେତନାରେ ହେବା ଦରକାର ।





# ଜାମାତା ନିର୍ବାଚନ

[ ୪ ]

ଦୁଇ ମୁଖିଆଙ୍କ ଅନୁମତି ଆଣିବାକୁ ଦୁଇଜଣ ଗ୍ରାମବାସୀ ଚାଲିଯିବା ପରେ ବିଦେଶୀ ଯୁବକ ରାଜଦୀପ ଅସୁସ୍ଥ ବାଳକର ହାତ ଓ ପାଦ ଘଷାଘଷି କଲା । କିଛି ସମୟ ପରେ ବାଳକଟି ଆଖି ଖୋଲି ଚାହିଁଲା ।

ତା'ପରେ ଘର ପଛପଟ ବଗିଚାରୁ ରାଜଦୀପ କିଛି ପତ୍ର ତୋଳି ଆଣି ପିଲାର ମା'କୁ କହିଲା, "ଏଇ ପତ୍ର ପ୍ରାୟ ସବୁଆଡ଼େ ମିଳେ । ଅନେକ ପ୍ରକାର ରୋଗରେ ଏହା ଔଷଧ ପରି କାମ କରେ ।" ଏତିକି କହି ସେ ପତ୍ରଗୁଡ଼ିକ ମକଚି କିଛି ରସ ବାଳକର ମୁହଁରେ ଦେଲା ।

ପର ମୁହୂର୍ତ୍ତରେହିଁ ବାଳକଟି ଉଠି ବସିଲା ଓ ତା'ର ବାପମା'ଙ୍କୁ ଚାହିଁ ଅଳ୍ପ ଅଳ୍ପ ହସିଲା । ପିଲାଟିର ମା' ଖୁବ୍ ଖୁସି ହେଲା । ସେ ରାଜଦୀପକୁ ପ୍ରଣାମ କରି କହିଲା, "ତମେ ମନୁଷ୍ୟ ନୁହଁ, ଦେବତା । ଆମେ ଯାହାକୁ ମୃତ ବୋଲି ଭାବିଥିଲୁ ତୁମେ ତାକୁ ଜୀବନ ଦେଇଛ ।"

ଇତିମଧ୍ୟରେ ଗ୍ରାମର ଦୁଇ ମୁଖିଆ ସେଠାରେ ଆସି ପହଞ୍ଚିଲେ ଆଉ ସବୁ କଥା ଶୁଣି ଚମକି ଉଠିଲେ । ତା'ପରେ ଦୁହେଁ ପୂର୍ବ କୂଟନୀତି ପ୍ରୟୋଗ କରିବାକୁ ମନସ୍ଥ କଲେ ।

ଜଣେ ମୁଖିଆ ରାଜଦୀପକୁ କଠୋର ଦୃଷ୍ଟିରେ ଚାହିଁ କହିଲା, "ଆମ ଔଷଧରେ ଯେଉଁ ରୋଗୀ ନ ବଞ୍ଚିଲା ସିଏ ତୁମ ଔଷଧରେ ବଞ୍ଚିଗଲା, ତା'ର ଅର୍ଥ ହେଉଛି ତମେ ବୈଦ୍ୟ ନୁହଁ ତାନ୍ତ୍ରିକ । ତମେ ମନ୍ତ୍ରତନ୍ତ୍ର କରି ଗ୍ରାମର ସର୍ବନାଶ କରିବାକୁ ବସିଛ ?"

ରାଜଦୀପ ଶାନ୍ତ ସ୍ୱରରେ ଉତ୍ତର ଦେଲା, "ମହାଶୟ, ମୁଁ କୌଣସି ତାନ୍ତ୍ରିକ ମାନ୍ତ୍ରିକ

"ବସୁନ୍ଧରା"

ନୁହେଁ । ହିମାଳୟରେ ଥିବା ଜଣେ ମହାନ୍ ତପସ୍ୱୀଙ୍କ ପାଖରେ ପିଲାଦିନରୁ ରହି ମୁଁ ମଣିଷ ହୋଇଛି । ସେହିଁ ମୋତେ ଅନେକ ପ୍ରକାରର ବିଦ୍ୟା ଶିଖାଇ ଦେଇଛନ୍ତି । ସବୁ କିଛି ଶିଖାଇବା ପରେ ସେ ମୋତେ ଆଦେଶ ଦେଲେ ଯେ ଗୋଟିଏ କଥା ଯେପରି ଜୀବନରେ ମୁଁ ମନେରଖେ ତାହା ହେଉଛି ପରୋପକାର । ଆଜି ଆପଣଙ୍କ ଗ୍ରାମରେ ଦେଖିଲି ବାଳକଟିଏ ମୃତ୍ୟୁ ମୁଖରେ ପଡ଼ିଛି । ତାକୁ ବଞ୍ଚାଇବା ପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କଲି ଓ ସେ ତା' ଭାଗ୍ୟକୁ ବଞ୍ଚିଗଲା ।"

"ତମେ ଆମ ଅନୁମତି ବିନା ବାଳକର ଚିକିତ୍ସା କରିଛ । ତଦ୍ୱାରା ଅବଶ୍ୟହିଁ ଆମ ଗ୍ରାମର ଅମଙ୍ଗଳ ହେବ । ଏହି ଅମଙ୍ଗଳରୁ ମୁକ୍ତି ପାଇବାର ଗୋଟାଏ ମାତ୍ର ଉପାୟ ଅଛି । ଅସୁସ୍ଥ ବାଳକର ପିତାମାତା ତୁମକୁ ଛାଟରେ ପିଟିବେ । ତମେ ପ୍ରସ୍ତୁତ ଅଛ ?" ବଡ଼ ମୁଖିଆ ପଚାରିଲେ ।

"ଯଦି ତଦ୍ୱାରା ଗ୍ରାମର ଅମଙ୍ଗଳ ଦୂର ହେବ ତେବେ ମୁଁ ବେତକ ସହିବାକୁ ପ୍ରସ୍ତୁତ ।" ରାଜଦୀପ ଉତ୍ତର ଦେଲା ।

ତା'ପରେ ମୁଖିଆଙ୍କର ଆଦେଶ ପାଇ ବାଳକର ମାତାପିତା ରାଜଦୀପକୁ ଦଶଥର-ଲେଖାଏ ଛାଟରେ ଖୁବ୍ ପିଟିଲେ । ପିଠିରେ ସ୍ଥାନେ ସ୍ଥାନେ ଚମ ଫାଟିଯାଇ ରକ୍ତ କ୍ଷରଣ ହେବାକୁ ଲାଗିଲା ।



"ଏବେ ଆମର ଗ୍ରାମର ଅନିଷ୍ଟ ଦୂର ହୋଇଗଲା । ବର୍ତ୍ତମାନ ତମେ ଆମର ଗ୍ରାମ ଛାଡ଼ି ଚାଲିଯାଅ ।" ଦୁଇ ମୁଖିଆ କହିଲେ ।

ରାଜଦୀପ କହିଲା, "ମହାଶୟ, ଏବେ ଆପଣ ମୋ ଦ୍ୱାରା ହୋଇଥିବା ଅନିଷ୍ଟ ଦୂର କରିବାର ଉପାୟ କହିଲେ । ଯଦି ମୁଁ କାହାକୁ ସାହାଯ୍ୟ କରେ ତେବେ ତା'ଠାରୁ ବେତମାଡ଼ ଖାଇବି । ତଦ୍ୱାରା ଆପଣଙ୍କ ଗାଁର କୌଣସି ଅନିଷ୍ଟ ହେବ ନାହିଁ । ତେଣୁ ମୋତେ ଏଠାରେ କିଛିଦିନ ପାଇଁ ରହିବାକୁ ଦିଅନ୍ତୁ ।"

ରାଜଦୀପର ଉତ୍ତର ଶୁଣି ଦୁଇ ମୁଖିଆ ବହୁତ ଆଶ୍ଚର୍ଯ୍ୟ ହେଲେ । ସେମାନେ ତାକୁ



କହିଲେ, "ତମେ ଏତେକ ମୂର୍ଖ ଯେ ମାଡ଼ ଖାଇ ମଧ୍ୟ ଏହି ଗ୍ରାମରେ ରହିବାକୁ ଚାହୁଁଛ ?"

"ମହାଶୟ, ମୋର ଏହି ଆଗ୍ରହର କୌଣସି କାରଣ ଅଛି । ସମସ୍ତ ଶାସ୍ତ୍ର ପୁରାଣ କହନ୍ତି କି ଅପକାର କରିବା ଲୋକର ମଧ୍ୟ ଉପକାର କରିବା ଉଚିତ୍ । କିନ୍ତୁ ଏଇ ଗାଁରେ ଏତେ ମୂର୍ଖ ସବୁ ଅଛନ୍ତି ଯେ ଉପକାରୀକୁ ଚାବୁକ୍ ମାରନ୍ତି । ଏ ଅବସ୍ଥାରେ ଏହି ଅଜ୍ଞାନୀମାନଙ୍କୁ ସାହାଯ୍ୟ କରିବା ମୁଁ ଉଚିତ୍ ମନେ କରୁଛି । ଏମାନଙ୍କ ପ୍ରତି ମୋର ସହାନୁଭୂତି ଅଛି ।"

ଦୁଇ ମୁଖିଆ ଭାବିପାରିଲେ ନାହିଁ କି ଉତ୍ତର ଦେବେ । କାରଣ ଏଭଳି ଲୋକ ଯେ ସଂସାରରେ ଅଛନ୍ତି ତାହା ସେମାନଙ୍କ କଳ୍ପନାର ବାହାରେ ଥିଲା । କିନ୍ତୁ ସେମାନଙ୍କ ମନ ପାପ ଓ ସନ୍ଦେହରେ ପୂର୍ଣ୍ଣ ଥିଲା । ତେଣୁ ନିଜର ସ୍ୱାର୍ଥ ସିଦ୍ଧି ପାଇଁ ସେମାନେ କହିଲେ, "ତମେ ତୁରନ୍ତ ଏ ଗାଁ ଛାଡି ଚାଲିଯାଅ । ବାସ୍ ଏହାହିଁ ଆମର ଆଦେଶ ।"

ରାଜଦୀପ କହିଲା, "ମୁଁ ଏଠାରୁ ଯିବିନାହିଁ ।"

"ନ ଯିବ ତ ଆମେ ବଳପୂର୍ବକ ଏଠାରୁ ତୁମକୁ ବାହାର କରିଦେବୁ ।" ଦୁଇ ମୁଖିଆ କଠୋର ସ୍ୱରରେ କହିଲେ ।

ରାଜଦୀପ ଅଳ୍ପ ହସି କହିଲା, "ମୁଁ ଯଦି ନିଜ ଇଚ୍ଛାରେ ଯାଏ ତ ଠିକ୍ ଅଛି । କିନ୍ତୁ ଆପଣମାନେ ବଳପୂର୍ବକ ମୋତେ ଏଠାରୁ ବାହାର କରି ଦେଇ ପାରିବେ ନାହିଁ । ଗୋଟିଏ କଥା ମନେ ରଖନ୍ତୁ । ମୋତେ ଯଦି କେହି ମାରେ ତେବେ ସେ ମାଡ଼ ପୁଣି ତା'ରି ଉପରେ ପଡ଼ିବ । ମୋତେ ଯିଏ ଧକ୍କା ଦେବ, ସେ ନିଜେହିଁ ପଡ଼ିଯିବ । ମୋତେ ଯିଏ ବିଷ ଦେବ ସେ ନିଜେ ବିଷରେ ଘାରି ହୋଇ ମରିବ ।"

ରାଜଦୀପର କଥା ଶୁଣି ଦୁଇ ମୁଖିଆ ରାଗରେ ଥରି ଉଠିଲେ । ସେମାନେ ସେଠାରେ ଉପସ୍ଥିତ ଥିବା ଦୁଇ ଯୁବକଙ୍କୁ ଆଦେଶ ଦେଇ କହିଲେ, "ଦେଖୁଛ କ'ଣ ? ମନେହୁଏ ଇଏ ଜଣେ ତାଂତ୍ରିକ । ଏହାକୁ ଏବେହିଁ ଧରି ଗ୍ରାମରୁ ବାହାର କରିଦିଅ ।"

ସେହି ମୁହୂର୍ତ୍ତରେହିଁ ଯୁବକଦ୍ୱୟ ଆଗକୁ ଆସିଲେ । ସେମାନେ ରାଜଦୀପ ପାଖକୁ ଆସିବା ପୂର୍ବରୁହିଁ ଛିଟି ହୋଇ ଭୂଇରେ ପଡ଼ିଲେ, ଯେପରି କିଏ ତାଙ୍କୁ ପେଲି ପକାଇ ଦେଲା । ଏ ଘଟଣା ଦେଖି ମୁଖିଆମାନେ ଚୁପ୍ ହୋଇଗଲେ । ଆଗରୁ ଏହି ଯୁବକକୁ ସେମାନେ ଜଣେ ଭଲ ବୈଦ୍ୟ ବୋଲି ଭାବିଥିଲେ । କିନ୍ତୁ ଏବେ ଭାବୁଛନ୍ତି ଯୁବକଟିର କିଛି ମନ୍ତ୍ରଶକ୍ତି ଅଛି । ସେମାନେ ଛଳନା ଓ କପଟ ଦ୍ୱାରା ଗ୍ରାମବାସୀଙ୍କୁ ଠକାଉଥିଲେ, କିନ୍ତୁ ମନ୍ତ୍ରତନ୍ତ୍ରର ଶକ୍ତି ନଥିଲା । ଏବେ ରାଜଦୀପର ଶକ୍ତି ଦେଖି ସେମାନେ ମନେ ମନେ ଭୟ କଲେ ।

ଦୁଇ ମୁଖିଆ କହିଲେ, "ଯୁବକ, ଏବେ ତ ଜଣାପଡ଼ିଲା ତମେ ଜଣେ ତାନ୍ତ୍ରିକ । ତମେ କ'ଣ ଆମକୁ ବଦନାମ କରିବାକୁ ଏ ଗାଁକୁ ଆସିଛ ?"

"ମୁଁ ତାନ୍ତ୍ରିକ ନୁହେଁ । ଲୋକଙ୍କର ଉପକାର କରିବାହିଁ ମୋର ଧର୍ମ ଓ କର୍ତ୍ତବ୍ୟ । ମୁଁ ଆପଣଙ୍କରହିଁ ସେବା କରିବାକୁ ଆସିଛି । ଆପଣଙ୍କ ସେବା ବିନା ଲୋକଙ୍କର ସେବା କରିବା କଠିନ ।" ରାଜଦୀପ କହିଲା ।

ରାଜଦୀପର ମୁହଁରେ ନିଜର ସେବାକଥା ଶୁଣି ଦୁଇ ମୁଖିଆ ବହୁତ ସନ୍ତୁଷ୍ଟ ହେଲେ ଓ ରାଜଦୀପକୁ ଗ୍ରାମରେ ରହିବା ପାଇଁ ଅନୁମତି ଦେଲେ ।

ସାନ ମୁଖିଆ କହିଲେ, "କିନ୍ତୁ ମନେରଖ, ଏଇ ଶର୍ତ୍ତରେ ଆମେ ରାଜି ଯେ ଆମକୁ ନ ପଚାରି ତମେ କୌଣସି ଲୋକକୁ କେବେ



ସାହାଯ୍ୟ କରିବ ନାହିଁ । କଲେ ଏଠାରୁ ବାହାରିଯିବ ।"

"ଦେଖନ୍ତୁ ଅନ୍ୟକୁ ସାହାଯ୍ୟ କରିବା ବେଳେ ମୁଁ କାହାକୁ ପଚାରି କରିପାରିବ ନାହିଁ । ସେଭଳି କ୍ଷେତ୍ରରେ ମୁଁ ଦେଶର ରାଜାଙ୍କୁ ମଧ୍ୟ ମାନିବି ନାହିଁ । ତା' ଛଡ଼ା ଆପଣମାନଙ୍କ କଥାରେ ଯେ ମୁଁ ଚଳିବି ତା'ର କୌଣସି କାରଣ ମୁଁ ଦେଖୁନାହିଁ ।" ରାଜଦୀପ ଦୃଢ଼ କଣ୍ଠରେ ଉତ୍ତର ଦେଲା ।

ଟିକିଏ ଡ଼େରି ହୋଇ ଯାଇଥିଲା । ଦୁଇ ମୁଖିଆ କେବଳ ମଥା ହଲାଇ ସମ୍ମତି ଦେଲେ । ଦୁଇ ମୁଖିଆଙ୍କ ଘର ମଝିରେ ଏକ ବଡ଼ ମଣ୍ଡପ ପରି ଥିଲା । ସେହିଠାରେ ଗ୍ରାମବାସୀଙ୍କର ସଭାସମିତି, ମନ୍ତ୍ରଣା ଇତ୍ୟାଦି ହୁଏ । ସେଠାରେ ଗୋଟାଏ ଛୋଟ ଘର ବନାଇ ଦେଲେ ରାଜଦୀପ ପାଇଁ ।

ମୁଖିଆମାନେ ଆଶ୍ଚର୍ଯ୍ୟ ହେଉଥିଲେ ଯେ ଲୋକଟା ମନ୍ତ୍ରତନ୍ତ୍ର ଏତେ ଜାଣେ ଅଥଚ ପ୍ରୟୋଗ କରୁନାହିଁ ଓ ସବୁବେଳେ ହସ ହସ ମୁହଁ ଓ ବ୍ୟବହାର ଅତି ସୁନ୍ଦର ।

ସେଠାରେ ରହିବା ପରେ ମୁଖିଆଙ୍କ କଥା ଅନୁସାରେ ସେ ଗ୍ରାମବାଲାଙ୍କ ଦୁଃଖସୁଖ ବୁଝେ ଓ ଯାହାକୁ ସାହାଯ୍ୟ କରେ ତା'ଠାରୁ କୋଡ଼ିଏଟି ବେତମାଡ଼ ଖାଇ ଚୁପ୍‌ଚାପ ସହି ଯାଏ । ଏସବୁ ଦେଖି ପ୍ରତ୍ୟେକ ଗ୍ରାମବାସୀଙ୍କ ହୃଦୟରେ ରାଜଦୀପ ପ୍ରତି ଦୟା ଓ ଆଦର ଖୁବ୍ ବଢ଼ିଗଲା । ସେମାନେ ସମସ୍ତେ ମୁଖିଆଙ୍କୁ ଯାଇ କହିଲେ, "ଆମେ ତାଙ୍କୁ ଆପଣଙ୍କ କଥାରେ ବେତମାଡ଼ ଦେବାରୁ ଆମ ସମସ୍ତଙ୍କୁ ବଡ଼ କଷ୍ଟ ଲାଗୁଛି, ସେତିକ ଦୟାକରି ବନ୍ଦ କରନ୍ତୁ ।"

"ତା' ମାନେ ତମେ ଆମ କଥା ଶୁଣିବ ନାହିଁ? ସେ ମାଂତ୍ରିକ । ତା'ର ସ୍ୱାର୍ଥ ଅଛି । ତେଣୁ ମଂତ୍ର ଶକ୍ତି କଟାଇବା ପାଇଁ ଆମେ ଏପରି କରିଥିଲୁ । ତମେ ନ ମାର । କିନ୍ତୁ ଦେଖ ନ ମାରିବା ଦ୍ୱାରା କ'ଣ ହେଉଛି ।



## ବାନର ବାନର ମାନବ



ବାନରଙ୍କର ଲାଞ୍ଜ ଥାଏ କିନ୍ତୁ ବାନରମାନବ ବା ଏପ୍‌ସଙ୍କର ଲାଞ୍ଜ ନଥାଏ । ସବୁଠାରୁ ବଡ଼ ପ୍ରଭେଦ ହେଉଛି ବାନରମାନବଙ୍କର ହାତଗୁଡିକ ଶରୀରଠାରୁ ଲମ୍ବା ।

ଟୌକାନ ପକ୍ଷୀର ନାକ ଦେଖିଲେ ଲାଗେ ତାହା ବହୁତ ଓଜନ ହୋଇଥିବ । କିନ୍ତୁ ତାହା ପତଳା ସୂତାରେ ବୁଣା ପରି ଓ ତା' ଉପରେ ପତଳା ହାଡ଼ର ଆବରଣ । ପ୍ରକୃତରେ ଏହା ଖୁବ୍ ହାଲୁକା ।




## ବରଫଖଣ୍ଡରୁ ଦେଶ



ଆଣ୍ଟାର୍କ୍‌ଟିକା ମହାଦ୍ୱୀପ ସବୁଠୁ ଯୋଡୁଥିବା ୪୦୦ ମାଇଲ୍ ଲମ୍ବା ବରଫର ପ୍ରାନ୍ତର ପ୍ରକୃତରେ ଭାସୁଥିବା ଛୋଟ ଛୋଟ ବରଫଖଣ୍ଡ ଯୋଡ ହୋଇ ହୋଇଛି । ଏହା ପ୍ରାୟ ୨୦୦ ଫୁଟ୍ ଉଚ୍ଚ ହେବ ।

# ଜହ୍ନମାମୁଁ

ଆଲୋକ ଓ ଆନନ୍ଦର ମାସିକ ପତ୍ରିକା



* ଭାରତର ପ୍ରାଚୀନ କାହାଣୀମାଳା ସହିତ ନୂତନ କାହାଣୀମାଳାର ଅପୂର୍ବ ସମନ୍ୱୟ ।

* ସରଳ ଓ ସଂଯତ ଭାଷାର ପ୍ରକୃଷ୍ଟ ଉଦାହରଣ—ଜହ୍ନମାମୁଁ ।

* ହାସ୍ୟରସ ସହ ମାନବିକତା ଓ ନୀତିଶିକ୍ଷାରେ ସମୃଦ୍ଧ ପତ୍ରିକା—ଜହ୍ନମାମୁଁ ।

* ଜହ୍ନମାମୁଁ କେବଳ ଶିଶୁ ବା କିଶୋରମାନଙ୍କ ପତ୍ରିକା ନୁହେଁ, ପରିବାରର ସମସ୍ତେ ଏହା ଉପଭୋଗ କରନ୍ତି ।

* ସାଧାରଣଜ୍ଞାନର ଭଣ୍ଡାର—ଜହ୍ନମାମୁଁ ।

* ଇଂରାଜୀ ଓ ସଂସ୍କୃତ ସମେତ ତେରଗୋଟି ଭାଷାରେ ପ୍ରକାଶିତ ଏ ପତ୍ରିକା ଭାରତର ଏକତାର ପ୍ରତୀକ ।

'ଜହ୍ନମାମୁଁ' ପଢ଼ନ୍ତୁ ଓ ପଢ଼ାନ୍ତୁ ।

ବାର୍ଷିକ ଦେୟ : ଟ ୩୦-୦୦



'ଜହ୍ନମାମୁଁ'ର ଗ୍ରାହକ ହେବା ନିମନ୍ତେ ଆପଣଙ୍କ ପୂରା ଠିକଣା ସହ ମନିଅର୍ଡର ତଳ ଠିକଣାକୁ ପଠାନ୍ତୁ :

## ଡଲ୍‌ଟନ୍ ଏଜେନ୍‌ସିଜ୍

ଚନ୍ଦାମାମା ବିଲ୍‌ଡିଙ୍ଗ୍‌ସ୍,

ବଡପଲନୀ, ମାଡ୍ରାସ-୬୦୦୦୨୬

# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



V. Muthuraman



V. Rajamani

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁନ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

## ଏପ୍ରିଲ୍ '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : ହାତ ନଅସି ନଅସି ଯୋଉଠି,

ଦ୍ୱିତୀୟ ଫଟୋ : ଆମେ ସାଇକେଲ୍ ଚଢ଼ୁ ସେଇଠି !

ପୁରସ୍କାର ବିଜୟୀ : ଶ୍ରୀ ନିରଞ୍ଜନ ନାୟକ, ପର୍ଣ୍ଣିରେଖା ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ଅନ୍ୟ ଦେଶ ପାଇଁ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାରେ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଙ୍ଗ୍ସ୍, ବଡପଲନୀ, ମାଡ୍ରାସ-୬୦୦୦୨୬

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISHWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.



The stories, articles and designs contained herein are exclusive property of the Publishers and copying or adapting them in any manner will be dealt with according to law.




# CHANDAMAMA

It unfolds the glory of India—both past and present—through stories, month after month.

Spread over 64 pages teeming with colourful illustrations, the magazine presents an exciting selection of tales from mythology, legends, historical episodes, glimpses of great lives, creative stories of today and knowledge that matters.

**In 12 languages and in Sanskrit too.**

Address your subscription enquiries to:

**DOLTON AGENCIES** 188 N.S.K. ROAD MADRAS-600 026